

ISBN 81-237-0908-0

1994 (ଶକାବ୍ଦ 1916)

ଭୀଷ୍ମ ସାହାନୀ, 1994

Jallianwala Bagh *(Oriya)*

ଟ. **9.50**

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ–5,
ଗ୍ରୀନ୍‌ପାର୍କ, ନୂଆଦିଲ୍ଲୀ–110 016 କର୍ତ୍ତୃକ ପ୍ରକାଶିତ ।

ନେହେରୁ ବାଳ ପୁସ୍ତକାଳୟ

# ଜାଲିଆନାୱାଲା ବାଗ

ଭୀଷ୍ମ ସାହାନୀ

ଅଳଙ୍କରଣ

ପ୍ରଶାନ୍ତ ମୁଖାର୍ଜୀ

ଅନୁବାଦ

ବଂଶୀଧର ସାହୁ



ନ୍ୟାସନାଲ୍ ବୁକ ଟ୍ରଷ୍ଟ, ଇଣ୍ଡିଆ

## କୃତଜ୍ଞତା

ଏହି ପୁସ୍ତକରେ ଦିଆଯାଇଥିବା ତଥ୍ୟ ତଥା ସଙ୍କେତ ମଧ୍ୟରୁ ଅଧିକାଂଶ ଶ୍ରୀ ରାଜାରାମ କୃତ **The Jallianwala Bagh Massacre** ରୁ ନିଆଯାଇଅଛି।

ନୂଆ ଦିଲ୍ଲୀ
17.1.94

**ଭୀଷ୍ମ ସାହାନୀ**



13 ଏପ୍ରିଲ 1919 ସଂଧ୍ୟା, ଗୁଳିକାଣ୍ଡ ପରେ ରତନଦେବୀ ନାମକ ଜଣେ ମହିଳା ନିଜ ସ୍ୱାମୀଙ୍କୁ ଖୋଜି ଖୋଜି ଜାଲିଆନାୱାଲା ବାଗରେ ପହଞ୍ଚିଲେ । ସେଠି ପହଞ୍ଚି ସେ ଯାହା ଦେଖିଲେ ଏବଂ ତାଂକୁ ଯେପରି ଲାଗିଲା, ତାହା ସଂକ୍ଷିପ୍ତରେ ତଳେ ବର୍ଣ୍ଣନା କରାଯାଇଅଛି ।

ମୁଁ ଜାଲିଆନାୱାଲା ବାଗ୍ ନିକଟରେ ମୋ ଘରେ ଥିଲି. ଯେତେବେଳେ ମତେ ଗୁଳି ଫୁଟିବାର ଶବ୍ଦ ଶୁଭିଲା, ମୁଁ ଡରିଗଲି, କାରଣ ମୋର ସ୍ୱାମୀ ମଧ ବାଗ୍‌କୁ ଯାଇଥିଲେ । ଦୁଇଜଣ ସ୍ତ୍ରୀଲୋକଙ୍କ ସହ ମୁଁ ତରିତରି କାନ୍ଦିବୋବେଇ ସେଠି ଯାଇ ପହଞ୍ଚିଲି । ଗଦା ଗଦା ଶବ ଏକାଠି ସେଠି ପଡିଥିବାର ମୁଁ ଦେଖିଲି ଏବଂ ସ୍ୱାମୀଙ୍କୁ ମୋର ଖୋଜିବାକୁ ଲାଗିଲି । ହଠାତ୍ ମୋ'ର ସ୍ୱାମୀଙ୍କର ଶବ ମୋତେ ମିଳିଗଲା । ସେ ସ୍ଥାନରେ ପହଞ୍ଚିବାକୁ ମୋତେ ଅନେକ ରକ୍ତ ଜୁଡୁବୁଡୁ ଶବର ଗଦା ପାରିକରିବାକୁ ପଡିଥିଲା ।

କିଛି ସମୟ ପରେ ଲାଲା ସୁନ୍ଦର ଦାସଙ୍କର ଦୁଇପୁଅ ସେଠିକି ଆସିଥିଲେ । ମୁଁ ତାଙ୍କୁ ଛୋଟ ଖଟିଆଟିଏ ଆଣିବାକୁ କହିଲି, ତାହେଲେ, ମୋର ସ୍ୱାମୀଙ୍କ ଶବକୁ ସହଜରେ ଆମେ ନେଇପାରିବୁ । ସେମାନେ ଚାଲିଗଲେ । ମୋ ସାଥିରେ ଆସିଥିବା ଦୁଇଜଣ ସ୍ତ୍ରୀଲୋକଙ୍କୁ ମଧ ମୁଁ ଘରକୁ ପଠାଇଦେଲି । ସେତେବେଳକୁ ସଂଧ୍ୟା ୫ ଟା ବାଜିବାକୁ ଯାଉଥିଲା, କର୍ଫ୍ୟୁ ଡ଼ରରେ କେହିବି ଘରୁ ବାହାରୁ ନଥିଲେ । କାନ୍ଦି କାନ୍ଦି ମୁଁ ଅପେକ୍ଷାକରି ଠିଆହେଲି ।

ପ୍ରାୟ ସାଢ଼େ ୫ଟାବେଳେ ଜଣେ ସର୍ଦ୍ଦାରଜୀ ଆସିଲେ । ଆଉକିଛି ଲୋକ ତାଙ୍କ ସାଙ୍ଗରେ ଥିଲେ । ସେମାନେ ମଧ ଶବମାନଙ୍କର ଭିତରୁ କିଛି ଖୋଜୁଥିଲେ । ମୁଁ ସେମାନଙ୍କୁ ଜାଣିନଥିଲି । ମୁଁ ସର୍ଦ୍ଦାରଜୀଙ୍କୁ ମୋର ସ୍ୱାମୀଙ୍କ ଶରୀରକୁ ଗୋଟିଏ ଶୁଖିଲା ଜାଗାରେ ରଖିଦେବାପାଇଁ ମୋତେ ସାହାଯ୍ୟ କରିବାକୁ ଅନୁରୋଧ କଲି । କାରଣ ଯେଉଁଠି ତାଙ୍କର ଶବ ପଡିଥିଲା, ସେ ଜାଗା ରକ୍ତରେ ଜୁତୁବୁତୁ ହୋଇଯାଇଥିଲା । ସର୍ଦ୍ଦାରଜୀ ଶବର ମୁଣ୍ଡତଳେ ହାତଦେଲେ ଏବଂ ମୁଁ ଗୋଡକୁ ଧରି ଉଠାଇଲି, ପାଖରେ ଥିବା କାଠ ଗଦା ଉପରେ ଶବଟିକୁ ରଖିଲୁ ।

ରାତି 10ଟା ପର୍ଯ୍ୟନ୍ତ ମୁଁ ଲାଲା ସୁନ୍ଦରଦାସଙ୍କ ପୁଅମାନଙ୍କ ଅପେକ୍ଷାରେ ରହିଲି । ମାତ୍ର କେହି ଆସିଲେ ନାହିଁ । ତାପରେ ମୁଁ ଟେରାଆଦୋଲବା ଆଡ଼କୁ ଚାଲିଲି । ଭାବିଲି, ଠାକୁର ଘରେ ରହୁଥିବା କେତେଜଣ ବିଦ୍ୟାର୍ଥୀଙ୍କୁ ନେବୁରା ହେବି ମୋତେ ସାହାଯ୍ୟ କରିବାପାଇଁ । ଏମିତି ଭାବି ଭାବି ମୁଁ କିଛି ବାଟ ଚାଲିଯାଇଥିଲି, ହଠାତ୍ ପାଖ ଘରର ଦୁଆର ପାଖରେ ବସିଥିବା ଜଣେ ପୁରୁଷ ମୋତେ ଏତେ ରାତିରେ କୁଆଡେ ଯାଉଛ ବୋଲି ପଚାରିଲେ । ମୁଁ କହିଲି, ମୋତେ ମୋ ସ୍ୱାମୀଙ୍କ ଶବକୁ ଉଠାଇବାପାଇଁ କେହି ଟିକେ ସାହାଯ୍ୟ କରନ୍ତୁ । ସେ ଉତ୍ତରଦେଲେ ବର୍ତ୍ତମାନ ଆସି ୫ ଟା ବାଜିଲାଣି । ଏବେ ତୁମକୁ କେହି ସାହାଯ୍ୟ କରିପାରିବେ ନାହିଁ । ମୁଁ କଟରା ଆଡକୁ ଚାଲିଲି । କିଛିବାଟ ଗଲାପରେ ଜଣେ ବୃଦ୍ଧଲୋକ ଗୋଟେ ଜାଗାରେ ବସି ହୁକା ପିଉଥିଲେ । ତାଙ୍କ ପାଖରେ 2/3 ଜଣ ଲୋକ ଶୋଇଯାଇଥିଲେ । ମୋର ଦୁଃଖ କାହାଣୀ ତାଙ୍କୁ ଶୁଣାଇଲି ଏବଂ ଏ ପରିସ୍ଥିତିରେ ସାହାଯ୍ୟ କରିବାପାଇଁ ହାତଯୋଡି ତାଙ୍କୁ ଅନୁରୋଧ କଲି । ମାତ୍ର ତାଙ୍କଠାରୁ ମଧ ସେଇ ଜବାବ

ମିଳିଲା, ଯେ ରାତ୍ରି 10 ଟା ହୋଇଗଲାଣି. ଆମେ ସେଠାକୁ ଯାଇ ଗୁଳିମାଡ ଖାଇବାକୁ ପ୍ରସ୍ତୁତ ନୋହୁଁ ।

ମୁଁ ଫେରି ଆସିଲି ଏବଂ ସ୍ୱାମୀଙ୍କ ଶବ ପାଖରେ ଯାଇ ବସିଲି । ହଠାତ୍ ମୁଁ ଗୋଟିଏ ବାଉଁଶବାଡି ପାଇଲି. ଯାହାଦ୍ୱାରା ସାରାରାତି ମୁଁ କୁକୁରଙ୍କୁ ଘଉଡେଇବାରେ ଲାଗିଲି । ସେତିକିବେଳେ ମୁଁ ଆଉ 3 ଜଣ ଲୋକଙ୍କୁ ଯନ୍ତ୍ରଣାରେ ଛଟପଟ ହୋଉଥିବାର ଦେଖିଲି । ପାଖରେ ଗୋଟେ ମଇଷି ମଧ ଯନ୍ତ୍ରଣାରେ କଷ୍ଟପାଉଥିଲା । 12 ବର୍ଷ ବୟସର ଗୋଟେ ପିଲା ମଧ ଗୁଳିର ଶିକାର ହୋଇଥିଲା ଏବଂ ବାରମ୍ବାର ମୋ ଆଡକୁ ବିକଳରେ ଦେଖୁଥିଲା ଓ କହୁଥିଲା ମୁଁ ତାକୁ ଏକୁଟିଆ ଯେପରି ଛାଡି ନଯାଏ । ତାକୁ କହିଲି. ମୁଁ ମୋ ସ୍ୱାମୀଙ୍କ ଶବକୁ ଛାଡି କୁଆଡେ ଯିବିନାହିଁ । ତାକୁ ମୁଁ ପଚାରିଲି. ତୋତେ ଶୀତ ଲାଗୁନାହିଁତ ? ଘୋଡିହେବାପାଇଁ ତୋତେ କିଛି ଦରକାର କି ? ତାକୁ ମୋ ଓଢ଼ଣିରେ ଘୋଡାଇ ପାରିଥାଆନ୍ତି. ସେ ମୋତେ ପାଣି ମାଗିଲା । ମାତ୍ର ସେ ଜାଗାରେ ପାଣି କେଉଁଠୁ ଆସିବ ?

ପ୍ରତି ଘଣ୍ଟାକରେ ମୋତେ ଦୂରରୁ ବଡ ଘଣ୍ଟାର ଟଣ ଟଣ ଧ୍ୱନି ଶୁଭୁଥିଲା । ରାତି 2 ଟା ବେଳେ ଜଣେ ଆହତ ଲୋକ ମୋତେ ତାଙ୍କର ଗୋଡକୁ ଶବଗଦା ଭିତରୁ କାଢ଼ିଦେବାପାଇଁ ବିନତି କଲେ । ସେ ଥିଲେ ସୁଲ୍‌ତାନ ନାମକ ଗୋଟାଏ ଗାଁର ଜାଠ । ମୁଁ କଷ୍ଟେମଷ୍ଟେ ରକ୍ତ ଜୁଡୁବୁଡୁ ହୋଇଥିବା ଲୁଗାକୁ ଧରି ତାଙ୍କ ଗୋଡକୁ ଉପରକୁ ଟାଣିଆଣିଲି । ତାପରେ ସକାଳ ସାଢ଼େ 5 ଟା ପର୍ଯ୍ୟନ୍ତ ସେଠିକି କେହିବି ଆସିଲେନାହିଁ. ପ୍ରାୟ .



6 ଟା ବେଳେ ଲାଲା ସୁନ୍ଦରଦାସ, ତାଙ୍କ ପୁଅ ଏବଂ ଆମ ଗଳିର କେତେକ ଲୋକ ଗୋଟିଏ ଖଟିଆ ଧରି ଆସିଲେ । ମୋ ସ୍ୱାମୀଙ୍କ ଶବକୁ ତାପରେ ସେଇ ଖଟିଆରେ ପକାଇ ଘରକୁ ନେଇଆସିଲି । ବାଗ୍‌ରେ ମୁଁ ଆହୁରି ଅନେକ ଲୋକଙ୍କୁ ତାଙ୍କର ବନ୍ଧୁବାନ୍ଧବ ମାନଙ୍କୁ ଖୋଜୁଥିବାର ଦେଖିଲି ।

ମୁଁ ସେଠି ସାରାରାତି ଯେମିତି ବିତାଇଛି, ସେ ଅନୁଭୂତିକୁ ବର୍ଣ୍ଣନା କରିପାରିବି ନାହିଁ । ମୋ ଚାରିପାଖରେ ଗୁଡାଏ ମୃତଦେହ ପଡିଥିଲା, ଯେଉଁମାନଙ୍କ ମଧ୍ୟରେ କେତେଗୁଡିଏ ବାଳୁତ ପିଲା ଥିଲେ । ସେ ନିର୍ଜନ ରାତିରେ କୁକୁରମାନଙ୍କର ବୋବାଳି ଏବଂ ଗଧମାନଙ୍କ ରଡି ବ୍ୟତୀତ ଆଉ କିଛି ଶୁଭୁନଥିଲା । ମୁଁ ଏହାଠାରୁ ଅଧିକା ବା କଣ କହିବି? ଯେପରି ଭାବରେ ମୁଁ ସେ ରାତି ସେଠି କାଟିଛି ତାହା କେବଳ ମୋତେ ଓ ଈଶ୍ୱରଙ୍କୁ ଜଣା ।

''ଜାଲିଆନାୱାଲା ବାଗ୍'' ଏ ନାମ ଶୁଣିଲା ମାତ୍ରେ ପ୍ରତ୍ୟେକ ଭାରତୀୟଙ୍କ ହୃଦୟରେ ଏକ ସ୍ପନ୍ଦନ ସୃଷ୍ଟି ହୋଇଯାଏ । ମାତ୍ର ଏଠିକା ଘଟଣାର ପୂରା କାହାଣୀ ବହୁତ କମ୍ ଲୋକଙ୍କୁ ଜଣା । ଆମର ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଏହାର ମହତ୍ତ୍ୱ ଖୁବ୍‌ବେଶି, ତାହାରି ସଂପୂର୍ଣ୍ଣ ବିବରଣୀ ଆଗରେ ଜାଣିପାରିବା ।

# ଅସନ୍ତୋଷରୁ ସ୍ପଷ୍ଟ ବିଦ୍ରୋହ



ବୈଶାଖୀ ପର୍ବ ଦିନ ଜାଲିଆନାୱାଲା ବାଗ୍‌ରେ ଘଟିଥିବା ଘଟଣା କିଛି ଅଲଗା ନଥିଲା । ବହୁତ ପୂର୍ବରୁ ଇଂରେଜ ଶାସନପ୍ରତି ଭାରତୀୟମାନଙ୍କର ଅବିଶ୍ୱାସ ବଢ଼ିଚାଲିଥିଲା ଏବଂ ବିଦେଶୀ ଶାସନର ଦାସତ୍ୱ ଜବଲରୁ ସେମାନେ ମୁକ୍ତ ହେବାକୁ ଚାହୁଁଥିଲେ ।

ପ୍ରଥମ ବିଶ୍ୱଯୁଦ୍ଧ (1914–18) ସମୟରୁ ଏ ଅସନ୍ତୋଷର ଭାବନା ଲୋକମାନଙ୍କ ହୃଦୟରେ ଆହୁରି ବଢ଼ି ଯାଇଥିଲା । ଏହାର ମୁଖ୍ୟ କାରଣ ହେଲା ବ୍ରିଟିଶ୍ ସରକାର ନିଜର ଅଧିକାର ବଳରେ ଯୁଦ୍ଧ ପାଇଁ ଭାରତରୁ ସମସ୍ତ ପ୍ରକାରର ସାହାଯ୍ୟ ସହଯୋଗ ନେଇଥିଲେ । ସରକାରୀ ଅଫିସର, ପୁଲିସ ସିପାହୀଙ୍କୁ ସାଥିରେ ନେଇ ଗାଁର ଯୁବକ ମାନଙ୍କୁ, ଜବରଦସ୍ତି ଇଂରେଜ ଫୌଜରେ ଭର୍ତ୍ତି କରାଯାଇଥିଲା । ଏକପକ୍ଷରେ ଫୌଜରେ ଭର୍ତ୍ତି, ଅପରପକ୍ଷରେ ଭାରତରୁ ଯୁଦ୍ଧ ଲାଗି

10 କୋଟି ପାଉଣ୍ଡ ଯୁଦ୍ଧ ଋଣ ମଧ୍ୟ ନିଆଯାଇଥିଲା, ଯାହାଫଳରେ ଆମଦାନୀ–ରପ୍ତାନୀ ଉପରେ ପ୍ରଭାବପଡି ଭାରତରେ ପ୍ରତ୍ୟେକ ଜିନିଷର ଦରଦାମ୍ ବଢିବାରେ ଲାଗିଥିଲା ।

ଖାଲି ଏତିକିରେ ଏ ଦୁର୍ଦ୍ଦଶା ଶେଷ ହେଲାନାହିଁ । ଏହି ମହାଯୁଦ୍ଧ 4 ବର୍ଷଧରି ଲାଗିରହିଲା । ସେହି ସମୟରେ ଭାରତରେ ବିଭିନ୍ନ ପ୍ରକାରର ବେମାରୀ ଯଥା: ହଇଜା, ମ୍ୟାଲେରିଆ, ପ୍ଲେଗ୍ ଏବଂ ଜ୍ୱର ଆଦି ବ୍ୟାପିଗଲା । ଇନ୍‌ଫ୍ଲୁଏଞ୍ଜା ଜ୍ୱରର ପ୍ରକୋପ ଏତେ ବଢ଼ିଗଲା ଯେ 11 କୋଟି ଲୋକଙ୍କର ମୃତ୍ୟୁହେଲା । ମାତ୍ର ବ୍ରିଟିଶ୍ ସରକାରଙ୍କ ତରଫରୁ ରୋଗୀମାନଙ୍କପାଇଁ କୌଣସି ବ୍ୟବସ୍ଥା କରାଯାଇନଥିଲା ।

ଏହା ଏକ ଦୁର୍ଭାଗ୍ୟର ବିଷୟ ଯେ 1918ରେ ବର୍ଷାର ଅଭାବରୁ ବିଭିନ୍ନ ସ୍ଥାନରେ ଦୁର୍ଭିକ୍ଷ ମଧ୍ୟ ଦେଖାଦେଇଥିଲା, ଫସଲର ଆମଦାନୀ କମ୍ ଏବଂ ଜିନିଷପତ୍ର ଦରଦାମ୍‌ରେ ବୃଦ୍ଧି, ଏ ପରିସ୍ଥିତିରେ ଦେଶରେ ଘୋର ଅଶାନ୍ତିର ଅନଳ କୁହୁଳିବାରେ ଲାଗିଥିଲା । ବିଭିନ୍ନ ସ୍ଥାନରେ ବିଦ୍ରୋହ ପ୍ରଦର୍ଶନ ଏବଂ ସ୍ୱାୟତ୍ତ ଅଧିକାରପାଇଁ ଲୋକମାନେ ସ୍ୱର ଉତ୍ତୋଳନ କଲେ ।

1918ରେ ବିଶ୍ୱଯୁଦ୍ଧର ଅବସାନ ହେଲା । ଯୁଦ୍ଧରେ ବ୍ରିଟେନ ବିଜୟୀ ହେଲା, ପରନ୍ତୁ ଯୁଦ୍ଧପରେ ଇଂରେଜ ସରକାରଙ୍କ ବ୍ୟବହାର ସହାନୁଭୂତିପୂର୍ଣ୍ଣ ହେବା ପରିବର୍ତ୍ତେ



ଦ୍ୱେଷପୂର୍ଣ୍ଣ ହୋଇଉଠିଲା । ଯୁଦ୍ଧପରେ ବ୍ରିଟିଶ୍ ସରକାର ଘୋଷଣା କଲେ ଯେ ଭାରତର ଶାସନରେ ପରିବର୍ତ୍ତନ ଆଣିବେ । ମାତ୍ର ଭାରତବାସୀଙ୍କ ପାଇଁ ସୁବିଧା କରିବା ତ ଦୂରର କଥା, ସେମାନେ ଦମନ, ଅତ୍ୟାଚାର ଆଦି କରିବାକୁ ଲାଗିଲେ । ସେହି ସମୟଠାରୁ ବୃଦ୍ଧିପାଉଥିବା ଅସନ୍ତୋଷ, ନୀତି ବିରୋଧି ଆନ୍ଦୋଳନର ଆକାର ନେଲା । ଏଥିମଧ୍ୟରୁ ଦୁଇଟି ଆନ୍ଦୋଳନର ପ୍ରସ୍ତୁତି ଦେଶ ବାହାରେ ହୋଇଥିଲା ଏବଂ ତୃତୀୟଟିର ଭାରତ ଭିତରେ ।

## ଗଦର ଆନ୍ଦୋଳନ

ଦେଶ ବାହାରେ ଯେଉଁ ଆନ୍ଦୋଳନର ସୃଷ୍ଟି ହେଲା, ସେଥିରେ ଗଦର ଆନ୍ଦୋଳନର ନାମ ପ୍ରସିଦ୍ଧ । ସେହି ସମୟରେ ଭାରତରୁ ଅନେକ ଲୋକ ରୋଜଗାର ପାଇଁ ଆମେରିକା ଓ କାନାଡାରେ ଯାଇ ରହିବାକୁ ଲାଗିଲେ । ଏମାନଙ୍କ ସହ ସେଠି ସମାନ ବ୍ୟବହାର କରାଯାଉନଥିଲା, ଯାହା ଫଳରେ ସେମାନେ ଅପମାନିତ ବୋଧ କରୁଥିଲେ ।

ସନ୍ 1913ରେ କାନାଡାରେ ଗୋଟିଏ ସଂଗଠନ ସ୍ଥାପିତ ହେଲା । ଏହି ସଂଗଠନ ଦ୍ୱାରା "ଗଦର" ନାମକ ଏକ ପତ୍ରିକା ପ୍ରକାଶିତ ହେଲା, ଯାହାର ପ୍ରଥମ ଅଙ୍କରେ ଲେଖାଥିଲା, "ଆଜିଠାରୁ ବାହାର ଦେଶମାନଙ୍କରେ ବ୍ରିଟିଶ୍‌ରାଜ୍ ବିରୁଦ୍ଧରେ ସଂଗ୍ରାମର ପ୍ରତିଷ୍ଠା କରାଗଲା । ଆମର ନାଁ କଣ ? – ଗଦର । ଆମର କାମ କଣ ? ଗଦର । ଏ ଗଦର କେଉଁଠି ବିସ୍ତାର କରିବ ? –ଭାରତରେ ।" ପତ୍ରିକାର ପ୍ରତ୍ୟେକ ପୃଷ୍ଠାରେ ସଶସ୍ତ୍ର ବିଦ୍ରୋହର ଆହ୍ୱାନ ଦିଆଯାଇଥିଲା ।

ଇତ୍ୟବସରରେ ସନ୍ 1914 ସେପ୍ଟେମ୍ବର 19 ଦିନ "କାମାଗାଟାମାରୁ" ଜାହାଜର



ଘଟଣା ଘଟିଲା । ଏହି ଘଟଣାରେ କାନାଡାକୁ ପ୍ରବେଶ କରୁଥିବା ଭାରତୀୟ ମାନଙ୍କୁ ଗୁଳିମାଡ କରାଗଲା, ଯେଉଁଥିରେ 18 ଜଣଙ୍କର ମୃତ୍ୟୁ ହେଲା ଏବଂ 25 ଜଣ ଆହତ ହେଲେ । ପ୍ରାୟ 200 ପ୍ରବାସୀଙ୍କୁ ବନ୍ଦୀ କରାଗଲା ଏବଂ ସେମାନେ ବର୍ଷବର୍ଷ ଧରି କାରାଗାରର ଯନ୍ତ୍ରଣା ସହିଲେ । ଏହାର ଖବର ଶୁଣି ଭାରତୀୟ ମାନଙ୍କ ମଧ୍ୟରେ ଦେଶ ବିଦେଶରେ ଦୁଃଖ ଏବଂ କ୍ରୋଧର ନିଆଁ ଜଳିଉଠିଲା ।

ସନ୍ 1915 ଫେବୃୟାରୀ ପର୍ଯ୍ୟନ୍ତ ପ୍ରାୟ 8 ହଜାର ପ୍ରବାସୀ ଲୁଚିକରି ଭାରତ ପହଞ୍ଚିଗଲେ ଏବଂ ଗୁପ୍ତବେଶରେ ସେନା ଛାଉଣୀରେ କାମ କରୁଥିଲେ । ମାତ୍ର ବିଦ୍ରୋହ ହୋଇପାରିଲା ନାହିଁ। ଅନେକ ଆନ୍ଦୋଳନକାରୀଙ୍କୁ ବନ୍ଦୀ କରି କାରାଗାରରେ ନିକ୍ଷେପ କରାଗଲା । ଏହିପରି ଭାବରେ ଗଦର ପାର୍ଟିର ଆନ୍ଦୋଳନକାରୀ ମାନଙ୍କର କାର୍ଯ୍ୟକଳାପର ସମାପ୍ତି ଘଟିଲା ।

## ଖିଲାଫତ୍ ଆନ୍ଦୋଳନ

ଇଂରେଜଙ୍କ ବିରୁଦ୍ଧରେ ଭାରତ ବାହାରେ ଆଉ ଏକ ଆନ୍ଦୋଳନର ସୂତ୍ରପାତ ହୋଇଥିଲା, ତାହାହେଲା 'ଖିଲାଫତ୍' ଆନ୍ଦୋଳନ । ଏହାର ପ୍ରାରମ୍ଭ ତୁର୍କୀରେ ହୋଇଥିଲା ଏ ଆନ୍ଦୋଳନ ଭାରତସ୍ଥିତ ମୁସଲମାନମାନଙ୍କୁ ଆକର୍ଷିତ କରିଥିଲା, ଏବଂ ଏହା ଇଂରେଜ ବିରୋଧି ହୋଇଥିବାରୁ ଭାରତ ଭିତରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମ ସହ ମିଶି ଯାଇଥିଲା ।

ପ୍ରଥମ ବିଶ୍ୱ ଯୁଦ୍ଧରେ ତୁର୍କୀ ବ୍ରିଟେନ୍ ବିରୁଦ୍ଧରେ "ଜିହାଦ୍" ଘୋଷଣା କରିଥିଲା । ତୁର୍କୀର ସୁଲ୍‌ତାନଙ୍କୁ ସେହି ସମୟରେ ବିଶ୍ୱସାରା ମୁସଲମାନଙ୍କ ନେତା "ଖଲିଫା" କୁହାଯାଉଥିଲା । ସେ ଗୋଟିଏ ବଡ ସାମ୍ରାଜ୍ୟର ସମ୍ରାଟ ଥିବାରୁ ଖିଲାଫତ ଆନ୍ଦୋଳନର ବିଶ୍ୱବ୍ୟାପୀ ପ୍ରଚାର ହୋଇଥିଲା । ଏ ଆନ୍ଦୋଳନ ବ୍ରିଟିଶ୍ ବିରୋଧୀ ଥିବାରୁ ଭାରତରେ ଥିବା ମୁସଲମାନ ନେତାମାନେ ଏହି ଆନ୍ଦୋଳନରେ ବହୁମାତ୍ରାରେ ଭାଗନେଲେ । ଗାନ୍ଧୀଜୀ ମଧ ଏ "ଖିଲାଫତ" ଆନ୍ଦୋଳନର ସ୍ୱାଗତ କରିଥିଲେ । ଜର୍ମାନୀ ଏବଂ ତୁର୍କୀର ସାହାଯ୍ୟରେ ଭାରତକୁ ସ୍ୱାଧିନ କରିବାପାଇଁ ଭିନ୍ନ ଭିନ୍ନ ଯୋଜନା ତିଆରିହେଲା । ଗୋଟିଏ "ଆର୍ମି ଅଫ୍ ଗାର୍ଡ" ଗଠନ କରାଗଲା । ମାତ୍ର ଏ ଯୋଜନା ମଧ ବିଫଳ ହେଲା । କେତେକ ଗୁପ୍ତ ଚିଠି 3 ଅଗଷ୍ଟ 1916ରେ ପଞ୍ଜାବ ସରକାରଙ୍କ ହାତରେ ପଡିଗଲା । ସେ ସତର୍କ ହୋଇଗଲେ ଏବଂ ଆନ୍ଦୋଳନ ଆଗେଇ ପାରିଲା ନାହିଁ ।

## ଭାରତର ଆଭ୍ୟନ୍ତରୀଣ ପରିସ୍ଥିତି

ଭାରତ ଭିତରେ ସେ ସମୟରେ କଣ ଚାଲିଥିଲା ? ହୋମ୍‌ରୁଲ୍ ଆନ୍ଦୋଳନ



ବାଳ ଗଙ୍ଗାଧର ତିଳକ



ଶ୍ରୀମତୀ ଆନିବେସାନ୍ତ

ସେତେବେଳେ ଜୋର୍‌ରେ ଚ୍ଚଲିଥିଲା । ସେ ଆନ୍ଦୋଳନର ନେତୃତ୍ୱ, ଭାରତର ଦୁଇଜଣ ବିଶିଷ୍ଟ ବ୍ୟକ୍ତି ନେଇଥିଲେ— ଜଣେ ହେଲେ ଲୋକମାନ୍ୟ ବାଳ ଗଂଗାଧର ତିଳକ ଏବଂ ଅନ୍ୟଜଣେ ହେଲେ ଆୟରଲ୍ୟାଣ୍ଡର ଆନିବେସାନ୍ତ । ଏମାନେ ଆନ୍ଦୋଳନର କାର୍ଯ୍ୟ ପ୍ରଣାଳୀକୁ ଯେଉଁ ପ୍ରକାରେ ପରିଚ୍ଚଳିତ କରୁଥିଲେ, ତାହା ଭାରତର ଲୋକମାନଙ୍କର ସ୍ୱଭାବ ଏବଂ ସେ ସମୟର ପରିସ୍ଥିତି ପ୍ରତି ଅଧିକ ଅନୁକୂଳ ଥିଲା । ପ୍ରଥମତଃ ଆନ୍ଦୋଳନର ନେତାମାନେ ଖୋଲାଖୋଲି ଭାବେ ଭାଷଣ ଦେଉଥିଲେ ଏବଂ ଲୁଚିଛପି କୌଣସି କାମ କରୁନଥିଲେ । ଦ୍ୱିତୀୟରେ ଏମାନଙ୍କ ଆନ୍ଦୋଳନ ହିଂସାପୂର୍ଣ୍ଣ ଏବଂ ସଶସ୍ତ୍ର ନହୋଇ ଶାନ୍ତିପୂର୍ଣ୍ଣ ଭାବେ ଚ୍ଚଲୁଥିଲା । ହୋମରୁଲ୍ ଆନ୍ଦୋଳନ ଜୋର୍‌ସୋର୍‌ରେ ଚ୍ଚଲିଲା, ବ୍ରିଟିଶ ସରକାର ଏହାକୁ ବନ୍ଦ କରିବା ପାଇଁ ପୂରାପୂରି ଉଦ୍ୟମ

ଚଳେଇଥାନ୍ତି । ଅନେକଦିନ ପୂର୍ବରୁ ଜେଲରେ ଥିବା ଲୋକମାନ୍ୟ ତିଳକ 1916 ଏପ୍ରିଲ୍‌ରେ ଏହି ଆନ୍ଦୋଳନର ସୂତ୍ରପାତ କଲେ । ସେପଟେ ଶ୍ରୀମତୀ ଆନିବେସାନ୍ତଙ୍କୁ ବନ୍ଦୀ କରି ନିଆଗଲା ଏବଂ ମାଡ୍ରାସରେ ଥିବା ହୋମ୍ ଲୀଗର ଛାପାଖାନାକୁ ଜବତ କରି ଦିଆଗଲା । 1917 ଗ୍ରୀଷ୍ମକାଳରେ ଏହା ଘଟିଥିଲା । ଯୁଦ୍ଧ ଶେଷ ହୋଇନଥିଲା । ଶ୍ରୀମତୀ ଆନିବେସାନ୍ତଙ୍କର ଗିରଫରେ ସାରାଦେଶ କ୍ରୋଧାନଳରେ ଜଳି ଉଠିଲା ।

ସେହି ସମୟରେ ଆମେରିକା ମଧ୍ୟ ଇଂଲାଣ୍ଡ ସହ ବିଶ୍ୱଯୁଦ୍ଧରେ ସାମିଲ ହୋଇଗଲା । ଏହାପରେ ଆମେରିକାର ତତ୍‌କାଳୀନ ରାଷ୍ଟ୍ରପତି ଉଇଲ୍‌ସନ୍ ବ୍ରିଟିଶ ସରକାରଙ୍କୁ ପରାମର୍ଶ ଦେଲେ ଯେ ଭାରତରେ ଉପୁଜିଥିବା ଅଶାନ୍ତିକୁ ଲୋପ କରିବାକୁ ହେଲେ ଇଂରେଜ ସରକାରଙ୍କୁ ନୀତିରେ କିଛି ପରିବର୍ତ୍ତନ ଆଣିବାକୁ ହେବ । ବ୍ରିଟିଶ ସରକାର 20 ଅଗଷ୍ଟ 1917 ରେ ଘୋଷଣା କଲେ ଯେ ଭାରତର ଶାସନ ନୀତିରେ ପରିବର୍ତ୍ତନ ଆଣିବେ । ଏହି ଘୋଷଣା ପରେ ଭାରତରେ ଚାଲିଥିବା ହୋମ୍‌ରୁଲ୍ ଆନ୍ଦୋଳନରେ ଶିଥିଳତା ଆସିଲା । ଭାରତବାସୀ ଅନୁଭବ କଲେ ଯେ ଏଇ ବିଶ୍ୱଯୁଦ୍ଧ ପରେ ଭାରତର ବର୍ତ୍ତମାନ ପରିସ୍ଥିତିରେ ପରିବର୍ତ୍ତନ ଆସିବ । ଇଂରେଜ ସରକାର ମନରେ କିନ୍ତୁ ଆଉ କିଛି ଥିଲା । ଡ଼ିସେମ୍ବର 1917ରେ ସରକାର ରାଜବିଦ୍ରୋହ ସମିତି **(Sedition Committee)** ଗଠନ କଲେ ଯାହା ରାଓଲେଟ୍ କମିଟି ନାମରେ ପରିଚିତ ।

ଜୁଲାଇ 1918ରେ ଏହି କମିଟିର ରିପୋର୍ଟ ଛପାଗଲା । ଭାରତର ସ୍ୱତନ୍ତ୍ରତା ଆନ୍ଦୋଳନକୁ ଏଇ ରିପୋର୍ଟ ଗୁଣ୍ଡାଙ୍କ ଆନ୍ଦୋଳନ ବୋଲି ଆଖ୍ୟା ଦେଲା ଏବଂ ଦର୍ଶାଇଲା ଯେ ଏମାନେ ଚୋରି, ହତ୍ୟା ଏବଂ ଦଙ୍ଗା କରୁଛନ୍ତି । ସେତେବେଳେ ସଂପୃକ୍ତ ନେତାମାନଙ୍କୁ ଅସାମାଜିକ ବୋଲି ଦର୍ଶାଇ ଏମାନେ କେବଳ ଲୁଟ୍‌ପାଟ୍, ମାରକାଟ୍ ଏବଂ ହତ୍ୟା ଆଦି ହିଂସାକାଣ୍ଡ କରାଉଛନ୍ତି ବୋଲି କୁହାଗଲା । ଏଣୁ ଏହି ଆନ୍ଦୋଳନ ଦ୍ୱାରା ଦେଶରେ ଅଶାନ୍ତି ବଢି ଚାଲିବ ବୋଲି ଦର୍ଶାଗଲା ।

ସେ ରିପୋର୍ଟ ଅନୁସାରେ ଏପରି ଅପରାଧୀମାନଙ୍କୁ ନିୟନ୍ତ୍ରଣ କରିବାପାଇଁ ନୂଆ ନିୟମ କାନୁନ୍ ତିଆରି କରିବାକୁ ହେବ ବୋଲି କୁହାଗଲା । ନୂଆ ପ୍ରସ୍ତାବିତ ଆଇନ୍ ଅନୁସାରେ ଯୁଦ୍ଧ ସମୟରେ ନାଗରିକମାନଙ୍କ ଉପରେ ଲାଗୁହୋଇଥିବା ଆଇନ ଯୁଦ୍ଧପରେ ମଧ୍ୟ ଲାଗୁରହିବ । ସମିତିର ରିପୋର୍ଟକୁ ଲାଗୁକରିବା ପାଇଁ ଦୁଇଟି ନୂଆ ଆଇନ ପ୍ରସ୍ତାବିତ ହେଲା । ପ୍ରଥମ ଆଇନ ଅନୁସାରେ ପ୍ରେସ ଉପରେ କଡ଼ା ନିୟନ୍ତ୍ରଣ ରଖାଯାଇ ପାରିବ । ଦ୍ୱିତୀୟ ଆଇନ ଅନୁସାରେ ଗିରଫ କରାଯାଇଥିବା ଭାରତୀୟଙ୍କୁ କୋର୍ଟରେ ହାଜର ନକରି ଦୁଇବର୍ଷକାଳ କାରାଗାରରେ ଅଟକେଇ ଦେଇ ହେବ ।

ଦେଶସାରା ପତ୍ରପତ୍ରିକାରେ ଏହାର ନିନ୍ଦା ପ୍ରତ୍ୟେକ ପୃଷ୍ଠାରେ କରାଗଲା । ସ୍ଥାନେ ସ୍ଥାନେ ଏହାର ବିଦ୍ରୋହ ସଭାମାନ ଆୟୋଜନ କରାଗଲା । ମାତ୍ର ବ୍ରିଟିଶ୍ ସରକାର ଟିକିଏ ହେଲେ ମଧ୍ୟ ହଲଚଲ ହେଲେନାହିଁ ।



# ଗାନ୍ଧୀଜୀଙ୍କ ଆଗମନ



ଠିକ୍ ଏଇ ସମୟରେ ଗାନ୍ଧୀଜୀଙ୍କର ଆଗମନ ହେଲା ।

ଗାନ୍ଧୀଜୀ ଦେଶରେ ଚାଲିଥିବା ସ୍ୱାଧୀନତା ଆନ୍ଦୋଳନରେ ଯଦି ସେବେ ଭାଗ ନେଇନଥାନ୍ତେ, ତେବେ ଆନ୍ଦୋଳନର ଲଗାମ ତାଙ୍କ ହାତରୁ ଖସି ଯାଇଥାନ୍ତା, ଏବଂ ଏହାର ରୂପରେଖ ଅଲଗା ହୋଇଯାଇଥାନ୍ତା । ସେତେବେଳେ ମୁଖ୍ୟତଃ ଭାରତର ବିତ୍ତବନ୍ତ, ଶିକ୍ଷିତ ଏବଂ ମଧ୍ୟବର୍ଗୀୟ ଲୋକେ "ହୋମ ରୁଲ" ଆନ୍ଦୋଳନରେ ସଂପୃକ୍ତ ଥିଲେ । ଜନସାଧାରଣ ପୂରାପୂରି ନିଜକୁ ମିଶାଇ ନଥିଲେ । ସେପଟେ କ୍ରାନ୍ତିକାରୀ ପଦକ୍ଷେପମାନ ଚାଲିଥିଲା, ଯେଉଁଥିରେ କେତେକ ଯୁବକ ସାମିଲ ହେଇଥିଲେ ।

ମାତ୍ର ଗାନ୍ଧୀଜୀଙ୍କର ଲକ୍ଷ୍ୟ ଥିଲା ସବୁକାର୍ଯ୍ୟ ଖୋଲାଖୋଲି ଭାବେ ହେଉ ଏବଂ କୌଣସି ପ୍ରକାରର ଲୁଚା ଚୋରା କାମ ନହେଉ । ଖାଲି ଯେ ସଂଗ୍ରାମ ପାଇଁ ପ୍ରସ୍ତାବ ଅନୁମୋଦନ କରିବା, ଭାଇସ୍‌ରାୟ ତଥା ଉଚ୍ଚଅଧିକାରୀଙ୍କ ସମ୍ମୁଖରେ ବିକ୍ଷୋଭ

ପ୍ରଦର୍ଶନ କରିବା, ତାହା ନୁହେଁ, ଗଳି ଗଳିରେ ଯାଇ ଶୋଭାଯାତ୍ରା କରିବା ଏବଂ ଦୀର୍ଘଦିନପର୍ଯ୍ୟନ୍ତ ଆନ୍ଦୋଳନକୁ ଚଳେଇ ରଖିବା ତାଙ୍କ କାର୍ଯ୍ୟକ୍ରମର ଉଦ୍ଦେଶ୍ୟ ଥିଲା ।

ଏହି ଆନ୍ଦୋଳନ ଅସହଯୋଗ ଆନ୍ଦୋଳନରେ ପରିଣତ ହେଲା । ଗାନ୍ଧୀଜୀଙ୍କର ଏଇ କାର୍ଯ୍ୟଯୋଗୁଁ ଜନସାଧାରଣ ଏହି ସଂଘର୍ଷରେ ବହୁସଂଖ୍ୟାରେ ଯୋଗଦେଲେ । ଗାନ୍ଧୀଜୀ ଭାବୁଥିଲେ ଯେପର୍ଯ୍ୟନ୍ତ ଦେଶର ସମସ୍ତ ଜନସମାଜ ସଂପୂର୍ଣ୍ଣଭାବେ ସ୍ୱାଧୀନତା ସଂଗ୍ରାମ୍‌ରେ ଯୋଗଦେବେ ନାହିଁ, ସେପର୍ଯ୍ୟନ୍ତ ଆନ୍ଦୋଳନ ଆଗକୁ ଯାଇପାରିବ ନାହିଁ।

ଗାନ୍ଧୀଜୀଙ୍କର ସ୍ୱାଧୀନତା ସଂଗ୍ରାମର ସମସ୍ତ କଳ୍ପନା ନୂଆ ଏବଂ ନିଜସ୍ୱ ଥିଲା । ଅସ୍ତ୍ରଶସ୍ତ୍ରରେ ତାଙ୍କର ବିଶ୍ୱାସ ନଥିଲା । ସେ ଅହିଂସା ଏବଂ ଧର୍ମର ଲଢ଼ାଇ ଲଢ଼ିବା ପାଇଁ ଚାହୁଁଥିଲେ । ହିଂସାର ଆଦୌ ପ୍ରୟୋଗ ହେବ ନାହିଁ, ଦେଶଭକ୍ତ ମାନେ ଯେତେ ଯନ୍ତ୍ରଣା ପାଆନ୍ତୁନା କାହିଁକି, ପରନ୍ତୁ ଶତ୍ରୁମାନଙ୍କୁ ଆକ୍ରମଣ ନ କରନ୍ତୁ । କେବଳ ନିସ୍ୱାର୍ଥପର ତ୍ୟାଗ ଦ୍ୱାରା ସେମାନଙ୍କୁ ଚେତାଇ ଦିଆଯିବ ଯେ ସେମାନଙ୍କର କାର୍ଯ୍ୟ ଅନ୍ୟାୟ ଅବିଚାର ପୂର୍ଣ୍ଣ । ସେ ଶତ୍ରୁମାନଙ୍କ ହୃଦୟରେ ପରିବର୍ତ୍ତନ ଚାହୁଁଥିଲେ । ଆତ୍ମବଳକୁ ସେ ଜୋର୍ ଦେଉଥିଲେ । ଏକପକ୍ଷରେ ସେ  ଇଂରେଜ ନୀତିକୁ ମୋଟେ ମାନୁନଥିଲେ, ଏହାର ମୁକାବିଲା କରିବାକୁ ପ୍ରସ୍ତୁତ ଥିଲେ । ଅନ୍ୟ ପକ୍ଷରେ କୌଣସି ହିଂସାର ପ୍ରୟୋଗରେ ବିଜୟଟୀକା ନିଜ ମଥାରେ ଲଗାଇବାକୁ ଚାହୁଁନଥିଲେ।

ଲୋକମାନଙ୍କୁ ଜାଗ୍ରତ କରିବାକୁ ହେବ ଯେ ଶତ୍ରୁ ସେମାନଙ୍କ ଉପରେ ଯେତେ ଗୁଳି ଚଳାଇଲେ ମଧ୍ୟ ଶତ୍ରୁକୁ ଗୁଳି ମାରିବନାହିଁ । ଗୁଳିର ଜବାବ ଗୁଳିରେ ଦେବନାହିଁ । ଲୋକଙ୍କର ମନରେ ହିଂସା ପ୍ରତି ଘୃଣା ଭାବ ଜାତ  କରିବାକୁ ହେବ, ଏହିପରି ନିଜର ଅସହଯୋଗ ଆନ୍ଦୋଳନ ଚାଲୁ ରଖିବାକୁ ହେବ –ଲୋକଙ୍କର ମନ ଏବଂ ହୃଦୟ ଜିତିବା ହେବ ପ୍ରଥମ କାମ । ଏହାକୁ ହିଁ ଗାନ୍ଧୀଜୀ ସତ୍ୟାଗ୍ରହର ନାମ ଦେଇଥିଲେ ।

# ରାଓଲେଟ୍ ପ୍ରସ୍ତାବ

20 ଫେବୃୟାରୀ 1919ରେ ଗାନ୍ଧୀଜୀ ଭାଇସ୍‌ରାୟ୍‌ଙ୍କର ପ୍ରାଇଭେଟ୍ ସେକ୍ରେଟାରୀଙ୍କୁ ଚିଠି ଲେଖିଲେ ଯେଉଁଥିରେ ସେ ରାଓଲେଟ ବିରୁଦ୍ଧରେ ସତ୍ୟାଗ୍ରହ ଆନ୍ଦୋଳନର ଭାବୀ କାର୍ଯ୍ୟକ୍ରମ ବିଷୟରେ ସୂଚନା ଦେଇଦେଲେ । ଏହା ଏକ ଅଭିନବ କଥା ଥିଲା ।

ଭାଇସ୍‌ରାୟ୍‌ଙ୍କ ଠାରୁ ଉତ୍ତର ମିଳିଲା ନାହିଁ । ଗାନ୍ଧୀଜୀ 23 ଫେବୃୟାରୀକୁ ଘୋଷଣା କଲେ ଅତିଶୀଘ୍ର ସତ୍ୟାଗ୍ରହ ଆରମ୍ଭ କରିବେ । ଦୁଇଦିନ ପରେ ସହଯୋଗୀମାନଙ୍କ ସହ ସତ୍ୟାଗ୍ରହ ଆରମ୍ଭ କରିବା ପାଇଁ ଶପଥ ନେଇ ଭାଇସ୍‌ରାୟ୍‌ଙ୍କର ପ୍ରାଇଭେଟ୍ ସେକ୍ରେଟାରୀଙ୍କୁ ଏ ସତ୍ୟାଗ୍ରହ ଆନ୍ଦୋଳନର ଧାରା ବିଷୟରେ ଜଣାଇଦେଲେ ।

ତଥାପି ବି ବ୍ରିଟିଶ ସରକାରଙ୍କ ଠାରୁ କୌଣସି ଉତ୍ତର ମିଳିଲା ନାହିଁ ।

1 ମାର୍ଚ୍ଚ 1919ରେ ସତ୍ୟାଗ୍ରହ ଆନ୍ଦୋଳନର ସୂତ୍ରପାତ ହେଲା । ସେହିଦିନ ପତ୍ରପତ୍ରିକା ଜରିଆରେ ଗାନ୍ଧୀଜୀ ସତ୍ୟାଗ୍ରହର ଶପଥ ଗ୍ରହଣ ବିଷୟରେ ଘୋଷଣା କଲେ । ସେହି ଶପଥାବଳୀର କିଛି ଅଂଶ ନିମ୍ନରେ ଦିଆଯାଇଛି :

"ଏହା ସ୍ପଷ୍ଟ ଯେ ଦୁଇଟିଯାକ ରାଓଲେଟ ପ୍ରସ୍ତା ଅନ୍ୟାୟପୂର୍ଣ୍ଣ ଏବଂ ଏଥିରେ ମନୁଷ୍ୟର ମୌଳିକ ଅଧିକାରକୁ ଦମନ କରାଯାଇଛି । ଯେପର୍ଯ୍ୟନ୍ତ ଏ ପ୍ରସ୍ତାବକୁ ପ୍ରତ୍ୟାହାର କରାନଯିବ ସେପର୍ଯ୍ୟନ୍ତ ଆମେ ପ୍ରତିଜ୍ଞା କରୁଛୁ ଯେ ଏହାକୁ ଆଦୌ ପାଳନ କରିବୁ ନାହିଁ ଏବଂ ମାନିବୁ ନାହିଁ । ଏହା ସଂଗେସଂଗେ ଏ ପ୍ରତିଜ୍ଞା ମଧ୍ଯ କରୁଛୁ ଯେ ଆମେ ଏ ଆନ୍ଦୋଳନ ସତ୍ୟ, ନିଷ୍ଠା ଏବଂ ଅହିଂସା ପଥରେ ଚଳାଇବୁ ଆମେ କୌଣସି ପ୍ରକାରର ହିଂସାର ପ୍ରୟୋଗ କରିବୁନାହିଁ, କିମ୍ବା କାହାର ଧନ ଓ ଜୀବନହାନୀର ଉଦ୍ୟମ କରିବୁ ନାହିଁ ।"

ଏହା ପରେପରେ ଗାନ୍ଧୀଜୀ ଦେଶସାରା ବୁଲି ଦେଖିବାପାଇଁ ବାହାରିଲେ । ସେ ଦିଲ୍ଲୀ, ବମ୍ବେ, କଲିକତା, ମାନ୍ଦ୍ରାଜ, ଉତ୍ତର ପ୍ରଦେଶ ଆଦି ସ୍ଥାନମାନ ବୁଲି ଦେଖିଲେ । ବଡବଡ ସଭାର ଆୟୋଜନ କରାଗଲା ଏବଂ ସେ ଜନସାଧାରଣଙ୍କୁ ନିଜ ଆନ୍ଦୋଳନର ଉଦ୍ଦେଶ୍ୟ ବିଷୟରେ ବୁଝେଇଲେ । ଭାଷଣରେ ସେ ଜୋର୍‌ଦେଇ କହିଲେ ଯେ ତାଙ୍କ ଆନ୍ଦୋଳନର ମୂଳମନ୍ତ୍ର ହେବ ଅହିଂସା ।

11 ମାର୍ଚ୍ଚ 1919ରେ ସେ ଭାଇସ୍‌ରାୟ୍‌ଙ୍କ ପ୍ରାଇଭେଟ୍ ସେକ୍ରେଟାରୀଙ୍କୁ ତାର ଦ୍ୱାରା ଜଣାଇଲେ ଯେ, "ଏବେ ମଧ୍ୟ ସମୟ ଅଛି ଇଂରେଜ ସରକାର ରାଓଲେଟ ପ୍ରସ୍ତାବକୁ ଫେରାଇ ନେଇପାରନ୍ତି । ମୁଁ ତୁମ ସରକାରଙ୍କୁ କହୁଛି ଯେ ସେ ଏହି ପ୍ରସ୍ତାବକୁ ମାନ୍ୟତା ଦେବା ପୂର୍ବରୁ ଶୀଘ୍ର ଲୋକମତ ଗ୍ରହଣ କରନ୍ତୁ । ଲୋକମତ ସାମନାରେ ଯଦି ସରକାରଙ୍କ ମୁଣ୍ଡ ନଇଁଯାଏ ତେବେ ସରକାରଙ୍କ ପ୍ରତି ଲୋକମାନଙ୍କର ସମ୍ମାନ ବଢ଼ିବ ସିନା କମ୍ ହେବନାହିଁ ।"

ବ୍ରିଟିଶ୍ ସରକାର ଗାନ୍ଧୀଜୀଙ୍କ କୌଣସି କଥା ଶୁଣିଲେ ନାହିଁ ଏବଂ 1919 ମସିହା ମାର୍ଚ୍ଚ 18 ତାରିଖରେ ଦୁଇଟି ରାଓଲେଟ୍ ପ୍ରସ୍ତାବ ମଧ୍ୟରୁ ଗୋଟିକୁ ଆଇନ୍‌ରେ ପରିଣତ କରିଦେଲେ ଯାହାକୁ ଏବେ ପ୍ରଖ୍ୟାତ ରାଓଲେଟ ଆକ୍ଟ୍ କୁହାଯାଉଛି ।

ସତ୍ୟାଗ୍ରହର ଭାବନା ଖୁବ୍ ଶୀଘ୍ର ଦେଶସାରା ବ୍ୟାପିବାକୁ ଲାଗିଲା, । । 1919 ମସିହାର ମାର୍ଚ୍ଚ 24 ଦିନ ଗାନ୍ଧୀଜୀ ଘୋଷଣା କଲେ ଯେ, ଯେତେବେଳେ କୌଣସି ଦେଶର ଜନସାଧାରଣ ଅନୁଭବ କରିବେ ଯେ ଅମୁକ ଆଇନ ଜାତୀୟ ଅପମାନ ସହ ସମାନ ବୋଲି, ସେତେବେଳେ ବିରୋଧ କରିବା ତାଙ୍କର ପରମ କର୍ତ୍ତବ୍ୟ ହେବ । ଭାରତର ଜନସାଧାରଣ ହିଂସାକୁ ଘୃଣାକରନ୍ତି । ବର୍ତ୍ତମାନ ପରିସ୍ଥିତିରେ ସେମାନେ ନିଜ ହୃଦୟରେ କୌଣସି ପ୍ରକାରର ଦୁର୍ଭାବନା, ଦ୍ୱେଷ ତଥା ତିରସ୍କାରକୁ ସ୍ଥାନ ନଦେଇ ନିଜର ବିରୋଧ ଭାବ ପ୍ରକାଶ କରିବେ ।



ଗାନ୍ଧୀଜୀ ଗୋଟିଏ ଦିନ ଅନଶନ କରି ଆନ୍ଦୋଳନର ଶୁଭାରମ୍ଭ କଲେ । ଏହା ରାଜନୈତିକ ସଂଘର୍ଷ ପାଇଁ ଏକ ମହାନ କାରଣ ଥିଲା । ଦେଶବାସୀଙ୍କୁ ଏହା ପ୍ରଭାବିତ ତଥା ପ୍ରେରିତ କରିବାରେ ସାହାଯ୍ୟ କରିଥିଲା ।

ବ୍ରିଟିଶ ଶାସକ ମାନଙ୍କର ଅଭିଯୋଗ ଥିଲା ଯେ ସତ୍ୟାଗ୍ରହ ଆନ୍ଦୋଳନ ଦ୍ୱାରା ବ୍ରିଟିଶ ସାମ୍ରାଜ୍ୟ ପାଇଁ ବହୁତ ବଡ଼ ବିପଦ ଆସି ପହଞ୍ଚିଥିଲା । ଏ ବିପଦ ଖାଲି ଭାରତ ବାହାରୁ, ମାନେ ଆଫଗାନିସ୍ତାନ, ସୋଭିଏତ୍ ରୁଷ, ତୁର୍କୀ ଆଦି ଦେଶମାନଙ୍କ ପକ୍ଷରୁ ନୁହେଁ, ଭାରତ ଭିତରେ ଥିବା ସଶସ୍ତ୍ର ସନ୍ତ୍ରାସବାଦୀ ମାନଙ୍କ ଦ୍ୱାରା ମଧ୍ୟ

ହୋଇପାରେ । ଏଣୁ ବ୍ରିଟିଶ ସରକାର ଦମନକାରୀ ନୀତି ପ୍ରୟୋଗ କରିବା ଅନିବାର୍ଯ୍ୟ ବୋଲି ସେମାନଙ୍କର ମତ ଥିଲା । ମାତ୍ର ବାସ୍ତବରେ ଏ ସମସ୍ତ ବୟାନ ଥିଲା ମିଥ୍ୟା । ବିଶ୍ୱ ଯୁଦ୍ଧରେ ବ୍ରିଟିଶ ଶକ୍ତି ବିଜୟୀ ହେଲା, ଏବେ ତାହାପାଇଁ ବିପଦ କେଉଁଠୁ ଆସିଲା ? ବ୍ରିଟିଶ ସରକାର ସତ୍ୟାଗ୍ରହ ଆନ୍ଦୋଳନକୁ ମାନିଲେ ନାହିଁ ଏବଂ ଅଭିଯୋଗ ବାଢ଼ିଲେ ଯେ ଏହି ଆନ୍ଦୋଳନର ମୂଳମନ୍ତ୍ର ଅହିଂସା ଶାନ୍ତିପୂର୍ଣ୍ଣ ହରତାଳ ନୁହେଁ, କାରଣ ଶାନ୍ତିପୂର୍ଣ୍ଣ ହରତାଳ ମଧ ବେଆଇନ୍ ତଥା ଏହାଦ୍ୱାରା ଲୋକମାନେ ଉତ୍ତେଜିତ ହୋଇ ପାରନ୍ତି ।

ଖାଲି ଏତିକି ନୁହେଁ, ଗାନ୍ଧୀଜୀଙ୍କୁ ନିନ୍ଦା କରିବା ପାଇଁ ମଧ୍ୟ ପ୍ରଚେଷ୍ଟା ହେଲା । ପ୍ରଚାର ହେଲା ଯେ ଗାନ୍ଧୀଜୀ ବାହାର ଦେଶରୁ, ମାନେ ଆଫଗାନ୍, ଋଷ, ତୁର୍କୀ, ଜର୍ମାନୀ ଆଦି ଦେଶମାନଙ୍କଠାରୁ ସାହାଯ୍ୟ ପାଉଛନ୍ତି ଏବଂ ଗଦର ପାର୍ଟିର ଆନ୍ଦୋଳନକାରୀ ମଧ ଗାନ୍ଧୀଜୀଙ୍କ ସମର୍ଥକ । ଏହା ମଧ୍ୟ କୁହାଗଲା ଯେ ଜାପାନୀ ତଥା ଋଷ କ୍ରାନ୍ତିକାରୀମାନେ ଅମୃତସର ସହରକୁ ସେମାନଙ୍କର ଆନ୍ଦୋଳନର ଆଖଡାଘର କରି ସାରିଲେଣି ଏବଂ ଏ ସତ୍ୟାଗ୍ରହ ଆନ୍ଦୋଳନକୁ ଜର୍ମାନୀ ବଢ଼ାଉଛି-- ଇତ୍ୟାଦି ଇତ୍ୟାଦି ।

# ପଞ୍ଜାବର ପରିସ୍ଥିତି



ଦେଶବ୍ୟାପୀ ସତ୍ୟାଗ୍ରହ ଚାଲିଥିବା ବେଳେ ପଞ୍ଜାବର ପରିସ୍ଥିତି କିପରି ଥିବ ?

ଏ ସତ୍ୟାଗ୍ରହ ଆନ୍ଦୋଳନ ଦେଶସାରା ବ୍ୟାପିଯାଇଥିଲା । ପଞ୍ଜାବ ଏହାର କେନ୍ଦ୍ରବିନ୍ଦୁ ହୋଇଯାଇଥିଲା । ପଞ୍ଜାବର ଲୋକମାନେ ଉତ୍ସାହପୂର୍ବକ ଏହି ଆନ୍ଦୋଳନରେ ସାମିଲ ହୋଇଥିଲେ । ରାଓଲେଟ୍ ପ୍ରସ୍ତାବ ବିରୁଦ୍ଧରେ ପଞ୍ଜାବରେ ହିଁ ସବୁଠାରୁ ଅଧିକ ବିକ୍ଷୋଭ ପ୍ରଦର୍ଶନ ହୋଇଥିଲା ।

ଏହାକୁ ଦେଖି ପଞ୍ଜାବର ଇଂରେଜ ଲେଫ୍‌ଟ୍‌ନାଣ୍ଟ ଗଭର୍ଣ୍ଣର ମାଇକେଲ୍ ଓ'ଡ୍ୱାୟାର ବଡ଼ ଦ୍ୱନ୍ଦରେ ପଡ଼ିଗଲେ । ଓ'ଡ୍ୱାୟାର କ୍ରୋଧପୂର୍ଣ୍ଣ ଏବଂ ନିର୍ଭୀକବ୍ୟକ୍ତି ଥିଲେ । ପ୍ରଥମେ ସେ ଭାବିଥିଲେ ଯେ ପଞ୍ଜାବର ଲୋକେ ଇଂରେଜ ସରକାରୀ ଶାସନର ବିରୋଧୀ ହେବେନାହିଁ କାରଣ ଯୁଦ୍ଧ ସମୟରେ ସବୁଠାରୁ ଅଧିକ ସାହାଯ୍ୟ ସେ ପଞ୍ଜାବରୁ ହିଁ ପାଇଥିଲେ । ସେଥିପାଇଁ ଏବେ ସେ ଅନୁଭବକଲେ ଯେ ପଞ୍ଜାବର ଲୋକେ



ଲେ. ଗଭର୍ଣ୍ଣର ମାଇକେଲ୍ ଓ'ଡ୍ବାୟାର୍

ତାଙ୍କ ସହ ବିଶ୍ୱାସଘାତକତା କଲେ । କାରଣ ସବୁଠାରୁ ଅଧିକ ବିଦ୍ରୋହ ପଞ୍ଜାବରେ ହିଁ ହେଉଥିଲା । ଏପରିକି ଅମୃତସରକୁ ଗୋଟିଏ ବିଦ୍ରୋହପୂର୍ଣ୍ଣ ସ୍ଥାନ ଭାବେ ଘୋଷଣା କରାଗଲା ।

ସାରା ପଞ୍ଜାବରେ ଅମୃତସର ସହରର ଗୋଟିଏ ବିଶେଷତ୍ୱ ଥିଲା । ସେ ସମୟରେ ଅମୃତସରର ଲୋକସଂଖ୍ୟା ପ୍ରାୟ ଦେଢ଼ଲକ୍ଷ ଥିଲା । ଏହା ଶିଖ୍ମାନଙ୍କର ବଡ ଧର୍ମସ୍ଥାନ । ଏତଦ୍‌ବ୍ୟତୀତ ବାଣିଜ୍ୟବେପାରର କେନ୍ଦ୍ରସ୍ଥଳ ହୋଇଥିବାରୁ ଦେଶର ଅନ୍ୟ ସହରମାନଙ୍କ ସହ ଏହାର ସଂଯୋଗ ଥିଲା ।

ସ୍ୱାଧୀନତା ସଂଗ୍ରାମରେ ନୂଆ ନୂଆ ନେତା ଲୋକଲୋଚନକୁ ଆସିଥିଲେ । ସେତେବେଳେ ଅମୃତସରରେ ଦୁଇଟି ନାମ ଲୋକମାନଙ୍କ ମୁହଁରେ ଘୋଷାଥିଲା । ଜଣେ ଯୁବକ ହେଲେ ଜର୍ମାନୀରୁ ବାରିଷ୍ଟରୀ କରି ଆସିଥିବା ଡ. କିଚ୍‌ଲୁ ଏବଂ ଆଉଜଣେ ଡା. ସତ୍ୟପାଲ, ଯିଏ ପେଷାରେ ଡାକ୍ତର ଥିଲେ । ସ୍ୱାଧୀନତା ସଂଗ୍ରାମରେ ସେମାନେ ନିଜକୁ ଗଭୀରତାର ସହ ସାମିଲ କରିଥିଲେ । ଏ ଦୁଇଜଣ କଂଗ୍ରେସ ସଦସ୍ୟ ଥିଲେ ।

କିଛି ସମୟ ପୂର୍ବରୁ ଡିସେମ୍ବର ୧୨୧୪ରେ ଏ ଦୁଇଜଣ ନେତା କଂଗ୍ରେସ ଅଧିବେଶନରେ ଯୋଗଦେବାକୁ ଆସିଥିଲେ । ଆଗାମୀ କଂଗ୍ରେସ ଅଧିବେଶନ ପଞ୍ଜାବରେ ବସିବାପାଇଁ ସେମାନେ ନିମନ୍ତ୍ରଣ ଦେଇ ଆସିଥିଲେ । ଏହି ପ୍ରସ୍ତାବ ଅନୁମୋଦନ ହୋଇ ସାରିଥିଲା, ଯାହାଦ୍ୱାରା ଏ ଦୁଇନେତାଙ୍କର ଲୋକପ୍ରିୟତା ସହରରେ ବହୁତ ବଢ଼ିଯାଇଥିଲା ।



ଡ: କିଚ୍‌ଲୁ



ଡ: ସତ୍ୟପାଲ

ଏହା ପୂର୍ବରୁ ରାଓଲେଟ୍ ପ୍ରସ୍ତାବ ବିରୁଦ୍ଧରେ ତଥା ସ୍ଥାନୀୟ ସମସ୍ୟାକୁ ନେଇ ଏହି ଦୁଇ ଯୁବନେତା ଜୋର୍‌ସୋର୍‌ରେ କାମ ଚଳେଇଥିଲେ । ପୁଣି ଗାନ୍ଧୀଜୀଙ୍କର ସତ୍ୟାଗ୍ରହ ଆନ୍ଦୋଳନକୁ ନେଇ ପଞ୍ଜାବସାରା ଉତ୍ସାହ ଏବଂ ଉନ୍ମାଦନା ସୃଷ୍ଟି ହୋଇଯାଇଥିଲା ।

21 ମାର୍ଚ୍ଚ 1919 କଥା, ସେତେବେଳେ ଅମୃତସରରେ "ଓ୍ୱକ୍ତ" ନାମକ ଏକ ପତ୍ରିକାରେ ଗୋଟିଏ କାର୍ଟୁନ ବାହାରିଥିଲା । ସେହି କାର୍ଟୁନ୍‌ରେ ଯୁଦ୍ଧପରେ ଭାରତ ପ୍ରତି କରାଯାଇଥିବା ଅନ୍ୟାୟ ଉପରେ ଟିପ୍ପଣି ଥିଲା ଏବଂ ଲେଖାଥିଲା, ବ୍ରିଟେନ୍‌ର "ସେକ୍ରେଟାରୀ ଅଫ୍ ଷ୍ଟେଟ୍ ଫର ଇଣ୍ଡିଆ" ଭାରତକୁ ଗୋଟେ "ମୁକ୍ତି ଟ୍ରଫି" (ମେଡାଲ) ଦେଉଥିବା ବେଳେ ମି. ରାଓଲେଟ୍ ନିଜ ବ୍ୟାଗ୍ ଖୋଲି ଟ୍ରଫି ସ୍ଥାନରେ ଗୋଟିଏ କଳାନାଗ ଭାରତୀୟମାନଙ୍କ ଉପରକୁ ଛାଡୁଛନ୍ତି ଏ କାର୍ଟୁନ୍‌କୁ ଦେଖି ପଞ୍ଜାବର ଲେଫ୍‌ଟ୍‌ନାଣ୍ଟ ଗଭର୍ଣ୍ଣର ମାଇକେଲ୍ ଓ'ଡ୍ୱାୟାର କ୍ରୋଧରେ ଚିତ୍କାର କରି ଉଠିଲେ ।

# କିପରି ଥିଲା ଜାଲିଆନାୱାଲା ବାଗ

ଏହି ପଡିଆ ପଞ୍ଜାବର ଅମୃତସର ସହରରେ ଅବସ୍ଥିତ । ବହୁତଦିନ ତଳେ ପଣ୍ଡିତ ଜଲ୍ଲା ନାମକ ଜଣେ ବ୍ୟକ୍ତି ସେଠାରେ ଗୋଟିଏ ବଗିଚ୍ଚ କରିଥିଲେ ଏବଂ ତାଙ୍କର ନାମ ଅନୁଯାୟୀ ତାହାକୁ ଜାଲିଆନାୱାଲା ବାଗ୍ କୁହାଯାଉଥିଲା ।

ସନ୍ ୧୨୧୨ରେ ଏହା ଖାଲଢିପ ଥିଲା । ଧୀରେଧୀରେ ଚାରିପାଖରେ ଦୋକାନ ବଜାର ଏବଂ ଘରଦ୍ୱାର ଗଢ଼ିଉଠିଲା । ସଭାସମିତି ପାଇଁ ଏବଂ ରାଲିପାଇଁ ଏହାକୁ ବ୍ୟବହାର କରାଯାଉଥିଲା । ସହରରୁ 4/5 ଟି ଗଳି ଓ ଗୋଟିଏ ଛୋଟରାସ୍ତା ବଜାର ଆଡୁ ଏହାକୁ ସ୍ପର୍ଶ କରିଥିଲା । ମାତ୍ର ଏହି ରାସ୍ତାରେ ବହୁତ ଭିଡ଼ ଥିଲା । ଏହି ପଡିଆରେ ଜାଗା ବହୁତ କମ୍ ଥିଲା ।



ସେହି ସମୟରେ ରାଓଲେଟ୍ ପ୍ରସ୍ତାବକୁ ଆଇନ୍‌ରେ ପରିଣତ କରାଗଲା । ଗାନ୍ଧୀଜୀ ତେଣୁ ଦେଶବ୍ୟାପୀ ହରତାଳ ପାଇଁ ମାର୍ଚ୍ଚ 30 ତାରିଖକୁ ନିର୍ଦ୍ଧାରିତ କରିଦେଲେ । ତାପରେ ଏହା ବିଗ୍ୱର କରାଗଲା ଯେ ହରତାଳ କରିବାପାଇଁ ଏତିକି ସମୟ ଯଥେଷ୍ଟ ନୁହେଁ। ଏଣୁ ଏଥର 6 ଏପ୍ରିଲ୍‌କୁ ତାହା ଘୁଞ୍ଚାଇ ଦିଆଗଲା । ତାରିଖର ଏଇ ପରିବର୍ତ୍ତନ ହୋଇଯିବା ଖବର ଅମୃତସର ଏବଂ ତାର ଆଖପାଖ ଅନେକ ସ୍ଥାନକୁ ଠିକ୍ ସମୟରେ ପଠାଯାଇ ପାରିଲା ନାହିଁ ।

## 29 ମାର୍ଚ୍ଚ 1919

29 ମାର୍ଚ୍ଚ 1919 ମସିହା, ସଂଧ୍ୟା 4.30 ବେଳେ ଜାଲିଆନାୱାଲା ବାଗ ପଡିଆରେ ଏକଜୁଟ ହେବାର ଆୟୋଜନ କରାଗଲା, ଯେଉଁଥିରେ ଅଧିକ ମାତ୍ରାରେ ଲୋକ ଭାଗନେଲେ । ତା'ପରଦିନ ଅର୍ଥାତ 30 ମାର୍ଚ୍ଚକୁ ହରତାଳ କରିବା ଉଦ୍ଦେଶ୍ୟ ଥିଲା ।

ବ୍ରିଟିଶ୍ ଅଫିସରମାନେ ପରେ ଅଭିଯୋଗ କରିଥିଲେ ଯେ ଶୋଭାଯାତ୍ରା କରିବାଦ୍ୱାରା ଲୋକମାନଙ୍କୁ ସରକାର ବିରୁଦ୍ଧରେ କୁମନ୍ତ୍ରଣା ଦିଆଗଲା । ମାତ୍ର ପ୍ରକୃତରେ ଏପରି କୌଣସି କଥା ସେମାନଙ୍କୁ କୁହାଯାଇନଥିଲା ।

ସଭାରେ ଡ. ସତ୍ୟପାଲ ପ୍ରଥମେ ଭାଷଣଦେଲେ । ସେ ଲୋକମାନଙ୍କୁ ପ୍ରାର୍ଥନା କଲେ ଯେ ଆମ୍ଭମାନଙ୍କ ଭିତରୁ କେହିବି ପୁଲିସ୍ କିମ୍ବା ସରକାରଙ୍କ ବିରୁଦ୍ଧରେ ସ୍ଲୋଗାନ ଲଗାଇବ ନାହିଁ । ସମସ୍ତେ ଶାନ୍ତିପୂର୍ବକ ଏବଂ ଶୃଙ୍ଖଳାର ସହ ହରତାଳ କରିବେ । କାରଣ ଆମର ଏ ହରତାଳ କେବଳ ସରକାରଙ୍କର ସେହି ପ୍ରଳୟକାରୀ ନୀତି ବିରୁଦ୍ଧରେ ହିଁ ଯିବ । ସେ ପୁଣି କହିଲେ ଯେ ଯୁଦ୍ଧ ସମୟରେ ଭାରତ ବ୍ରିଟିଶ୍ ସରକାରଙ୍କୁ ବହୁତ ସାହାଯ୍ୟ କରିଛି, ମାତ୍ର ତା'ର ପୁରସ୍କାରରେ ଆମ୍ଭମାନଙ୍କର ଗୋଲାମୀର ସୂତାକୁ ଆହୁରି ଦୀର୍ଘ କରିଦିଆଗଲା, ଯେପରିକି ଆମେ ଇଂରେଜଙ୍କ ଦାସ

ହୋଇ ଆଉ କିଛିଦିନ କାମ କରିପାରିବା ।

ଏହାପରେ ଡ. କିଚ୍‌ଲୁ କହିଥିଲେ ଯେ ବ୍ରିଟିଶ୍ ସରକାର ଯୁଦ୍ଧ ସମୟରେ ଭାରତରୁ ପାଇଥିବା ବିଶ୍ୱାସପୂର୍ଣ୍ଣ ସାହାଯ୍ୟକୁ ହୃଦୟଙ୍ଗମ କରିଥିଲେ ଏବଂ ଘୋଷଣା କରିଥିଲେ ଯେ ଶାସନ ନୀତିରେ ପରିବର୍ତ୍ତନ ଆଣିବେ । ସେ କହିଲେ, ହୋମ୍‌ରୁଲ୍ ଆମର ଏକମାତ୍ର ଲକ୍ଷ୍ୟ ଯାହା ବ୍ରିଟେନ୍‌ର ଅନ୍ୟ ସ୍ୱୟଂଶାସିତ ରାଜ୍ୟମାନଙ୍କରେ ଚାଲିଛି ।

ଡକ୍ଟର କିଚଲୁ ଶେଷରେ କହିଥିଲେ:

> ଆମେ ପୁଲିସ୍ କିମ୍ବା ଉଚ୍ଚ ଅଫିସରମାନଙ୍କ କ୍ଷତି ଚାହିଁବାନାହିଁ । ଗାନ୍ଧୀଜୀଙ୍କ ଅନୁରୋଧ ଅନୁସାରେ ପୁଲିସ୍ କିମ୍ବା ସରକାରୀ କର୍ମଚାରୀମାନଙ୍କ ଉପରେ ହାତ ଉଠାଇବା ନାହିଁ, ସେମାନେ ପଛେ ହିଂସାର ମାର୍ଗ ଗ୍ରହଣ କରନ୍ତୁ ।

ଗିରିଧାରୀଲାଲ୍ ନାମକ ଜଣେ ବ୍ୟକ୍ତି ଯିଏ ସଭାକୁ ଦେଖାରଖା କରୁଥିଲେ, ନିଜ ଭାଷଣରେ ପରଦିନ ହରତାଳ ପାଇଁ ଆସିବାକୁ ଅନୁରୋଧ କରିଥିଲେ । ଯାହାର ମନ ନମାନିବ ସେମାନେ ହରତାଳ ଛାଡି ଯାଇପାରନ୍ତି । ମାତ୍ର କାହାକୁ ଜୋର୍ ଜବରଦସ୍ତି ସାମିଲ୍ କରାଯିବ ନାହିଁ ।

## 30 ମାର୍ଚ୍ଚ 1919

ମାର୍ଚ୍ଚ 30 ତାରିଖ ଆସିଲା । ସବୁ ଜାତି ଏବଂ ଧର୍ମର ଲୋକେ ପରସ୍ପରକୁ ଆଲିଂଗନ କରୁଥିଲେ । ଲୋକମାନେ ନିଜନିଜର ଦୋକାନ ମନକୁମନ ବନ୍ଦ କରିଦେଲେ । ସବୁ କାରବାର ମଧ୍ୟ ବନ୍ଦ । ଗୋଟିଏ ଘୋଡାଗାଡି ମଧ୍ୟ ଦେଖିବାକୁ ମିଳୁନଥିଲା । ଅଭୂତପୂର୍ବ ହରତାଳ, ସବୁବନ୍ଦ । ପରଦିନ ଏସବୁ ଖବରକାଗଜରେ ବଡ ବଡ ଅକ୍ଷରରେ ପ୍ରକାଶ ପାଇଲା, ସେଇଦିନ ଜାଲିଆନାୱାଲା ବାଗ୍‌ରେ ସାଧାରଣ ସଭାର ଆୟୋଜନ ହେଲା,

ଡ଼: କିଚଲୁ ଏହାର ଅଧକ୍ଷତା କଲେ । ସଭାର ସମୟ 4.30 ବେଳେ ଥିଲା । ମାତ୍ର 4ଟା ବାଜିବାର କିଛିସମୟ ପୂର୍ବରୁ ସଭା ଆରମ୍ଭ ହୋଇଯାଇଥିଲା, କାରଣ 40 ହଜାରରୁ ଅଧିକ ଲୋକ ଏକଜୁଟ୍ ହୋଇଯାଇଥିଲେ ।

ଏ ସାଧାରଣ ସଭାରେ ଦୁଇଟି ପ୍ରସ୍ତାବ ପାସ୍ କରାଗଲା । ପ୍ରଥମ ପ୍ରସ୍ତାବରେ ଥିଲା ରାଓଲେଟ୍ ଆକ୍ଟର ଜୋର୍‌ଦାର୍ ଭର୍ତ୍ସନା ଏବଂ ଏହାକୁ ଫେରାଇ ନେବାର ଦାବୀ । ଦ୍ୱିତୀୟଟିରେ ଏହା ସ୍ଥିର କରାଗଲା ଯେ ଏ ହରତାଳ ଓ ଶୋଭାଯାତ୍ରାର ଖବର ତାରଦ୍ୱାରା ଗାନ୍ଧୀଜୀଙ୍କୁ ଏବଂ ପତ୍ରପତ୍ରିକାରେ ପ୍ରକାଶ ପାଇଁ ତତ୍‌କ୍ଷଣାତ୍ ଦିଆଯାଉ ।

ଏମିତି ହରତାଳ ଦିଲ୍ଲୀରେ ମଧ୍ୟ କରାଗଲା । ଦେଶବ୍ୟାପୀ ଏ ହରତାଳ ଆରମ୍ଭ କରିବାର ନିର୍ଦ୍ଧାରିତ ତାରିଖର ପରିବର୍ତ୍ତନର ଖବର ସେଠି ମଧ୍ୟ ପହଞ୍ଚିପାରି ନଥିଲା । ଦିଲ୍ଲୀରେ କେତେକ ହିଂସାକାଣ୍ଡ ମଧ୍ୟ ଘଟିଥିଲା । ସେଦିନ କେତେଜଣ ସ୍ୱେଚ୍ଛାସେବକ ରେଳ ଷ୍ଟେସନରେ ପହଞ୍ଚିଲେ । ଏମାନେ ଚାହୁଁଥିଲେ ଯେ ରେଳ କର୍ମଚାରୀ ମଧ୍ୟ ହରତାଳରେ ଭାଗନିଅନ୍ତୁ । ମାତ୍ର କର୍ମଚାରୀମାନେ ତାଙ୍କର ଅନୁରୋଧ ରଖିଲେନାହିଁ ଏବଂ ଦୁଇଦଳ ମଧ୍ୟରେ ଝଗଡା ହେଲା । ଏକଥା ବହୁତ ଆଗକୁ ବଢ଼ିଯାଇଥିଲା । କିଛି ସମୟପରେ ପୋଲିସ୍ ସେଠି ପହଞ୍ଚିଗଲେ, ଜନତାଙ୍କ ଉପରେ ଗୁଳି ଚଳେଇଲେ । ଫଳରେ ୫ ଜଣ ଲୋକଙ୍କର ମୃତ୍ୟୁ ହେଲା ଏବଂ ଏହାର ଦୁଇଗୁଣ ଲୋକ ଖଣ୍ଡିଆ ଖାବରା ହେଲେ ।

ସେଦିନ ସନ୍ଧ୍ୟାରେ ଦିଲ୍ଲୀରେ ଗୋଟିଏ ସାଧାରଣ ସଭାର ଆୟୋଜନ କରାଗଲା । ସ୍ୱାମୀ ଶ୍ରଦ୍ଧାନନ୍ଦ ଏହାର ମୁଖ୍ୟ ଥିଲେ । ଏଠି ମଧ୍ୟ ପୋଲିସ ଫଉଜ ପହଞ୍ଚିଗଲା । ସ୍ୱାମୀଜୀ ପ୍ରତିଶ୍ରୁତି ଦେଲେ କି ଶାନ୍ତିଭଂଗ ହେବନାହିଁ । ଏହା ଶୁଣି ପୋଲିସ୍ ସେ ଜାଗା ଛାଡି ଚାଲିଆସିଲେ । ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କ ଭାଷଣ ପରେ ଯେତେବେଳେ

ଲୋକମାନଙ୍କ ଶୋଭାଯାତ୍ରା ତାଙ୍କରି ନେତୃତ୍ୱରେ ଯିବାକୁ ଲାଗିଲା, ସଶସ୍ତ୍ର ପୋଲିସ ସେମାନଙ୍କର ରାସ୍ତା ବନ୍ଦ କରିଦେଲେ । ସ୍ୱାମୀଜୀ ସେଠି ନିଜ ଛାତି ଖୋଲି ପୋଲିସ୍‌କୁ ଆହ୍ୱାନ ଦେଲେ, ମୋତେ ଗୁଳିମାର । ସେତିକିବେଳେ ସେଠି ଜଣେ ପୋଲିସ୍ ଅଧିକାରୀ ଘୋଡ଼ାରେ ବସି ପହଞ୍ଚିଗଲେ, ତାଙ୍କୁ ସେଠୁ ପଳାଇଯିବାପାଇଁ ଆଦେଶ ଦେଲେ ।

31 ମାର୍ଚ୍ଚ ସନ୍ଧ୍ୟାରେ ପୋଲିସ ଗୁଳିରେ ମୃତ୍ୟୁବରଣ କରିଥିବା ଲୋକମାନଙ୍କର ଶବକୁ ନେଇ ଏକ ଶୋଭାଯାତ୍ରା ବାହାର କରାଗଲା । ଦିଲ୍ଲୀର ଏ ଘଟଣା ପଞ୍ଜାବର ଲୋକମାନଙ୍କୁ ଆହୁରି ଉତ୍ତେଜିତ କଲା ।

## ହିନ୍ଦୁ ମୁସଲମାନ ଭ୍ରାତୃତ୍ୱର ଦୃଶ୍ୟ

ନିମ୍ନରେ ଦିଆଯାଇଥିବା ଅଂଶ ବମ୍ବେ କ୍ରୋନିକଲ୍‌ର ରିପୋର୍ଟରୁ ନିଆଯାଇଛି ଯାହା ଦିଲ୍ଲୀ ସାମ୍ବାଦିକଙ୍କ ଠାରୁ 4 ଏପ୍ରିଲ 1919 ଦିନ ପଠାଯାଇଥିଲା ।

କେତେକ ବ୍ୟବସାୟିକ ଶ୍ରେଣୀର ମୁସଲମାନ ସ୍ୱାକ୍ଷର ଦେଇ ଗତରାତିରେ ଗୋଟିଏ ଜ୍ଞାପନ ଦେଇ ଘୋଷଣା କଲେ ଯେ ଆଗାମୀ ଶୁକ୍ରବାର ନମାଜ ପରେ ଜାମା ମସ୍‌ଜିଦ୍‌ଠାରେ ସମସ୍ତେ ଏକତ୍ରିତ ହୋଇ ଦିଲ୍ଲୀ ହତ୍ୟାକାଣ୍ଡରେ ମୃତ୍ୟୁବରଣ କରିଥିବା ଶହୀଦମାନଙ୍କର ଆତ୍ମାର ଶାନ୍ତି ପାଇଁ ଏକ ପ୍ରାର୍ଥନା କରାଯିବ । ତାପରେ ଖବର ପ୍ରସାରିତ ହେଲା ଯେ ହିନ୍ଦୁମାନେ ମଧ୍ୟ ଏଥିରେ ଯୋଗଦାନ ପାଇଁ ଆଗ୍ରହୀ । ଏଇ ଶୁକ୍ରବାର ଦିନ ଘୋଷିତ ସମୟରେ 15000 ରୁ ଅଧିକ ମୁସଲମାନ ପ୍ରାର୍ଥନା କରିଥିଲେ, ଯାହା ସାଧାରଣ ଶୁକ୍ରବାର ଅପେକ୍ଷା ବହୁତ ଅଧିକ ଥିଲା । ତାପରେ କିନ୍ତୁ ଯାହା ଘଟିଥିଲା ତାହା ଥିଲା ଅଭିନବ ଏବଂ ଭାରତ ଓ ଇସଲାମର ଇତିହାସରେ ସ୍ମରଣୀୟ ଘଟଣା ହୋଇ ରହିବ । ହଜାର ହଜାର ହିନ୍ଦୁ ମସ୍‌ଜିଦ୍‌କୁ ଯାଇ ଏ ଶୋକ ପ୍ରାର୍ଥନାରେ ଭାଗ ନେଇଥିଲେ ଯେଉଁମାନଙ୍କୁ କି ହାର୍ଦ୍ଦିକ ସ୍ୱାଗତ କରାଯାଇ ଅତିଥି ରୂପେ ଗ୍ରହଣ କରାଯାଇଥିଲା ଏବଂ ମୁସଲମାନଙ୍କ ସହ ମସ୍‌ଜିଦ୍‌ରେ ସ୍ଥାନ ଦିଆଯାଇଥିଲା ।

## 2 ଏପ୍ରିଲ 1919

ଗାନ୍ଧୀଜୀଙ୍କର ପରମଭକ୍ତ ସ୍ୱାମୀ ସତ୍ୟଦେବ ସେତେବେଳେ ପଞ୍ଜାବ ଆସିଲେ ଏବଂ ସ୍ଥାନେ ସ୍ଥାନେ ଭାଷଣ ମାଧ୍ୟମରେ ଲୋକମାନଙ୍କର ଆତ୍ମବଳ ବଢ଼େଇବାକୁ ଚେଷ୍ଟା କଲେ । 2 ଏପ୍ରିଲକୁ ଜାଲିଆନାୱାଲାବାଗ ପଡିଆରେ ସ୍ୱାମୀ ସତ୍ୟଦେବ 7000 ଶ୍ରୋତା ଥିବା ଏକ ସଭାରେ ଭାଷଣ ଦେଲେ । ସେମାନଙ୍କୁ ସେ ବାରମ୍ବାର ବୁଝାଇଲେ କି କୌଣସି ଅବସ୍ଥାରେ ହିଂସାକାଣ୍ଡ କରିବା ଆଦୌ ଉଚିତ ନୁହେଁ । ପୋଲିସ କର୍ମଚାରୀମାନଙ୍କ ବିରୁଦ୍ଧରେ କୌଣସି ପ୍ରକାରର ଅଶ୍ଳୀଳ ଭାଷା ପ୍ରୟୋଗର ମଧ୍ୟ ଆବଶ୍ୟକତା ନାହିଁ ।

## 5 ଏପ୍ରିଲ 1919

6 ଏପ୍ରିଲକୁ ପୁଣି ହରତାଳ ହେବାର ଥିଲା । ମାଇକେଲ ଓ'ଡ୍ୱାୟାର ଏଇ ହରତାଳ କରାଇ ନଦେବାକୁ ନିଜପକ୍ଷରୁ ପୂରା ଚେଷ୍ଟା କରିଥିଲେ । ଡକ୍ଟର କିଚଲୁଙ୍କୁ ବାରଣ କରାଗଲା ଯେ ସେ କୌଣସି ସଭାରେ ଭାଷଣ ଦେଇ ପାରିବେ ନାହିଁ । ଗାନ୍ଧୀଜୀ ପଞ୍ଜାବରେ ପ୍ରବେଶ କରି ପାରିବେ ନାହିଁ ବୋଲି ବାସନ୍ଦ କରାଗଲା । ଅମୃତସରର ଡେପୁଟି କମିଶନର 5 ଏପ୍ରିଲରେ ନାଗରିକମାନଙ୍କର ଏକ ବୈଠକ ଡାକିଥିଲେ ଯେଉଁଥିରେ ସରକାରଙ୍କୁ ସମର୍ଥନ କରୁଥିବା ବହୁ ରାୟବାହାଦୁର, ଖାନବାହାଦୁରମାନେ ଉପସ୍ଥିତ ଥିଲେ । ଏଇ ବୈଠକରେ ଇଂରେଜ ଡେପୁଟି କମିଶନର ଉପସ୍ଥିତ ଲୋକଙ୍କୁ ଅପିଲ୍ କରିଥିଲେ ଯେ 6 ଏପ୍ରିଲର ହରତାଳକୁ ହେବାକୁ ଦିଆନଯାଉ । ଉପସ୍ଥିତ ଲୋକଙ୍କର ସମ୍ମତି ନେବାରେ ସେ ସଫଳ ହୋଇଯାଇଥିଲେ ଏବଂ ଅମୃତସରରେ ଖବର ବ୍ୟାପିଗଲା ଯେ 6 ଏପ୍ରିଲରେ ହରତାଳ ହେବନାହିଁ ।

କଂଗ୍ରେସର ଯୁବ କର୍ମକର୍ତ୍ତାଙ୍କୁ ଏହାର ଖବର ଯେତେବେଳେ ମିଳିଗଲା, ସେମାନେ ହଡବଡେଇ ଗଲେ । ସେମାନେ ଏକାଠି ହୋଇ ନିର୍ଣ୍ଣୟନେଲେ ଯେ ଘର ଘର ବୁଲି ଲୋକଙ୍କୁ ସୂଚନା ଦେବେ ଯେ ହରତାଳ ବନ୍ଦ ହୋଇନାହିଁ, ହରତାଳ ନିଶ୍ଚୟ ହେବ । ସେଦିନ ଗୋଟିଏ ସ୍ଥାନରେ କ୍ରିକେଟମ୍ୟାଚ୍ ହେଉଥିଲା, ଯାହାକୁ ହଜାର ହଜାର ଦର୍ଶକ ବସି ଦେଖୁଥିଲେ । ଡକ୍ଟର କିଚଲୁ ଏବଂ ଡକ୍ଟର ସତ୍ୟପାଲ ସଞ୍ଜ ହେଉ ନହେଉଣୁ ସେଠି ପହଞ୍ଚିଗଲେ ଏବଂ ଦର୍ଶକମାନଙ୍କ ପାଖକୁ ଯାଇ ସୂଚିତ କଲେ ଯେ ପରବର୍ତ୍ତୀ ଦିନ ସହରରେ ହରତାଳ ନିଶ୍ଚୟ ହେବ ।

## 6 ଏପ୍ରିଲ 1919

ଦ୍ୱିତୀୟ ଦିନ ହରତାଳ ବେଶ୍ ବଡ ଆକାରରେ ହେଲା । ଏପରିକି ଛୋଟ ଛୋଟ ଦୋକାନୀ, ଫେରିବାଲା ଏବଂ ଦୁଧବାଲାମାନେ ମଧ୍ୟ ହରତାଳରେ ଭାଗ ନେଲେ । ଏହା ସମ୍ପୂର୍ଣ୍ଣ ଶାନ୍ତିପୂର୍ଣ୍ଣ ଥିଲା ।

ସନ୍ଧ୍ୟାରେ ଜାଲିଆନାୱାଲା ବାଗରେ ଗୋଟିଏ ସାଧାରଣ ସଭାର ଆୟୋଜନ କରାହେଲା ଯେଉଁଥିରେ ପ୍ରାୟ ପଚ୍ଚଶ ହଜାର ଲୋକ ଉପସ୍ଥିତ ଥିଲେ । କବିତା ପାଠ ଏବଂ ଭାଷଣ ବ୍ୟତୀତ ଏଥିରେ ତିନୋଟି ପ୍ରସ୍ତାବ ଅନୁମୋଦନ କରାଗଲା । ପ୍ରଥମ ପ୍ରସ୍ତାବରେ ରାଓଲେଟ୍ ଆକ୍ଟକୁ ଫେରସ୍ତ ନେବାପାଇଁ ବ୍ରିଟିଶ୍ ସରକାରଙ୍କୁ ଅନୁରୋଧ କରାଗଲା । ଦ୍ୱିତୀୟ ପ୍ରସ୍ତାବରେ ପଞ୍ଜାବର ଲେଫଟ୍‌ନାଣ୍ଟ ଗଭର୍ଣ୍ଣରଙ୍କୁ କୁହାଗଲା, ଡ. କିଚ୍‌ଲୁ ଏବଂ ଡ. ସତ୍ୟପାଲଙ୍କ ଭାଷଣ ଉପରେ ଲଗାଯାଇଥିବା ପ୍ରତିବନ୍ଧକ ଉଠାଇ ଦିଆଯାଉ । ତୃତୀୟ ପ୍ରସ୍ତାବରେ ଥିଲା, ସତ୍ୟାଗ୍ରହ ଆନ୍ଦୋଳନର ଭୁରିଭୁରି ପ୍ରଶଂସା ଏବଂ ଏକ ସତ୍ୟାଗ୍ରହ ସମିତି ସ୍ଥାପନ କରିବାର ପରାମର୍ଶ ଦିଆଗଲା ।

ଶେଷରେ, ବାରିଷ୍ଟର ବଦର–ଉଲ୍–ଇସ୍ଲାମ୍ ଅଲ୍ଲୀ ଖାନ୍ ନିଜ ଅଧକ୍ଷ ଭାଷଣରେ କହିଲେ:

ମହାତ୍ମାଗାନ୍ଧୀ ଆମକୁ ଯାହା ଶିଖାଇଛନ୍ତି ତଦନୁସାରେ ଆମେ ଧୈର୍ଯ୍ୟର ସହ ସମସ୍ତ ପ୍ରକାରର ଦୁଃଖ ଏବଂ ଯନ୍ତ୍ରଣାକୁ ସହ୍ୟ କରିବା । ମିଥ୍ୟାର ପରାଜୟ ଏବଂ ସତ୍ୟର ବିଜୟ ହେବ । ଯଦି ଆପଣ ଶାନ୍ତିରେ ରହିବେ, ଧୈର୍ଯ୍ୟ ରଖିବେ ଏବଂ ସହନଶୀଳତାର ଶକ୍ତିକୁ ବଢ଼ାଇବେ, ତେବେ ଏହାର ପ୍ରଭାବ ସମସ୍ତଙ୍କ ଉପରେ ନିଶ୍ଚିତଭାବରେ ପଡିବ । କିନ୍ତୁ ଯଦି କେଉଁଠି ବି ଛୋଟରୁ ଛୋଟ କିଛି ଘଟଣା ଘଟେ, ଯଦି ଦୁଇଜଣ ଲୋକ ଝଗଡା କରନ୍ତି, ତେବେ ଏହାର ଖରାପ ପ୍ରଭାବ ପଡିବ ଏବଂ ଏତେ ସଭାସମିତିର ମୂଲ୍ୟ କିଛିବି ରହିବ ନାହିଁ । ଏଣୁ ଶ୍ରୋତାମାନଙ୍କୁ ଅନୁରୋଧ ଯେ ସେମାନେ ଶୃଙ୍ଖଳାର ସହିତ ସଭା ପରିତ୍ୟାଗ କରନ୍ତୁ ଏବଂ କେଉଁଠି ହେଲେ ଶୋଭାଯାତ୍ରା ବାହାର କରନ୍ତୁ ନାହିଁ । କୌଣସି ପ୍ରକାରର ବିକ୍ଷୋଭ ପ୍ରଦର୍ଶନ କରନ୍ତୁ ନାହିଁ ।

ଗାନ୍ଧୀଜୀ ଘୋଷଣା କଲେ ଯେ ତାଙ୍କର ସତ୍ୟାଗ୍ରହ ଆନ୍ଦୋଳନ 6 ଏପ୍ରିଲ୍‌କୁ ଥିବା ହରତାଳ ପରେହିଁ 7 ଏପ୍ରିଲ ଦିନ ସାରାଦେଶରେ ଆରମ୍ଭ କରିବେ । 6 ଏପ୍ରିଲ୍ ଦିନ ଏ ହରତାଳ ସଫଳ ଏବଂ ଶାନ୍ତିପୂର୍ଣ୍ଣ ରହିଲା, ମାତ୍ର ସତ୍ୟାଗ୍ରହ ଶୁଭାରମ୍ଭର ତୃତୀୟଦିନ ଅମୃତସରର ପରିସ୍ଥିତି ବିଗିଡିବାରେ ଲାଗିଲା । ଏହା ପଛରେ ମୁଖ୍ୟତଃ ଇଂରେଜ ଲେଫ୍‌ଟ୍‌ନାଣ୍ଟ ଗଭର୍ଣ୍ଣରଙ୍କର ହାତ ଥିଲା ।

## 7 ଏପ୍ରିଲ 1919

ଏପ୍ରିଲ 7 ତାରିଖ ଦିନ ଗାନ୍ଧୀଜୀ 'ସତ୍ୟାଗ୍ରହ' ନାମକ ଏକ ପତ୍ରିକା ବାହାର କଲେ । ଏହି ପତ୍ରିକାର ପ୍ରକାଶନ ପାଇଁ ସରକାରଙ୍କ ଠାରୁ ଅନୁମତି ନିଆ ଯାଇନଥିଲା ଏବଂ ପଞ୍ଜିକରଣ କରାଯାଇନଥିଲା । ଭାରତୀୟ ପ୍ରେସ୍ ଆଇନକୁ ମଧ୍ୟ ଉଲ୍ଲଙ୍ଘନ

କରାଯାଇଥିଲା । ପତ୍ରିକାରେ ଗାନ୍ଧୀଜୀ ଭାବୀ ସତ୍ୟାଗ୍ରହୀ ଏବଂ ଆଗ୍ରହୀ ବ୍ୟକ୍ତିଙ୍କୁ 4 ଟି ପୁସ୍ତିକା ପଢ଼ିବାକୁ କହିଥିଲେ । ଏଇ ପୁସ୍ତିକାଗୁଡିକ ଛାପିବାରେ ପ୍ରତିବନ୍ଧକ ଲଗାଯାଇଥିଲା । ସେଗୁଡିକ ହେଲା:– *ହିନ୍ଦ ସ୍ୱରାଜ୍ୟ, ସର୍ବୋଦୟ ଅଥବା ବିଶ୍ୱବ୍ୟାପୀ ପ୍ରଭାତ, ସତ୍ୟାଗ୍ରହ କି କାହାନୀ,* ଏବଂ *ମୁସ୍ତାଫା କମାଲ ପାଶାକୀ ଜୀବନୀ ଔର ଯୋଗଦାନ* । ପ୍ରଥମ ତିନୋଟି ପୁସ୍ତକ ଗାନ୍ଧୀଜୀଙ୍କ ଦ୍ୱାରା ରଚନା କରାଯାଇଥିଲା ।

ଏହି ବହି ଗୁଡ଼ିକ ବାଛିବାର ଉଦ୍ଦେଶ୍ୟଥିଲା ସତ୍ୟାଗ୍ରହୀଙ୍କୁ ପ୍ରଶିକ୍ଷଣ ଦେବା । ଜନସେବା ପାଇଁ ଆଗ୍ରହୀ ସେବକମାନେ ଏ ଶିକ୍ଷା ମଧ ପାଇବେ ଯେ କିପରି ସମସ୍ତ ପ୍ରକାରର ଅସୁବିଧାର ସାମନା କରି ପାରିବେ । ତା ସହିତ ଏପରି ବହି ଲେଖା ହେବା ଉଚିତ ଯାହାକୁ ଅଧ୍ୟୟନ କଲେ ଲୋକମାନଙ୍କ ମନରେ ସତ୍ୟାଗ୍ରହ ଆନ୍ଦୋଳନ ପ୍ରତି ସଠିକ ଧାରଣା ଉପୁଜିବ ଏବଂ ହିଂସା ବା ଦ୍ୱେଷ ଭାବ ମନରେ ଆସିବ ନାହିଁ ।

ସେହିଦିନ ପଞ୍ଜାବର ଲେଫ୍ଟନାଣ୍ଟ ଗଭର୍ଣ୍ଣର ଲାହୋରରେ ରାଜ୍ୟ ବିଧାନ ପରିଷଦ ବୈଠକରେ ଅଂଶ ଗ୍ରହଣ କଲେ । ବୈଠକ ଶେଷରେ, ସେ ସାମ୍ବାଦିକ ଏବଂ ରାଜନୈତିକ କର୍ମକର୍ତ୍ତା ମାନଙ୍କୁ ଧମକ୍ ଦେଇ କହିଲେ ଯେ ସେମାନେ ଯେପରି ଭାବେ ଲେଖୁଛନ୍ତି ବା କହୁଛନ୍ତି ତାଙ୍କୁ କେବେ ମଧ୍ୟ କ୍ଷମା ଦିଆଯାଇପାରିବ ନାହିଁ ।

## ୫ ଏପ୍ରିଲ 1919

ଏଠି 1919 ଏପ୍ରିଲ ୫ ତାରିଖରେ ଅମୃତସରର ଡେପୁଟି କମିଶନର ଲାହୋରର କମିଶନରଙ୍କୁ ଅମୃତସରର ପରିସ୍ଥିତି ନେଇ ଗୋଟିଏ ଲମ୍ବା ପତ୍ର ଲେଖିଲେ । ଏହାର ଗୋଟିଏ ନକଲ ଲେଫ୍ଟନାଣ୍ଟ ଗଭର୍ଣ୍ଣର ମାଇକେଲ ଓ'ଡ୍ୱାୟାରଙ୍କୁ ମଧ୍ୟ ପଠାଇଦେଲେ । ସେ ଚିଠିର କିଛି ଅଂଶ ପରପୃଷ୍ଠାରେ ଦିଆଗଲା:

ଆମକୁ ଆଜି କିମ୍ବା କାଲି ଯେକୌଣସି ଦିନ ପଦକ୍ଷେପ ନେବାକୁ ହିଁ ହେବ । ଆମେ ହରତାଳକୁ ବାସନ୍ଦ କରିବାକୁ ହେବ, ଶୋଭାଯାତ୍ରାକୁ ମଧ୍ୟ ବାରଣ କରିବାକୁ ପଡ଼ିବ । ଏସବୁକୁ କରିବାକୁ ହେଲେ ଆମକୁ ସେନା ବାହିନୀର ଶକ୍ତିର ସାହାଯ୍ୟ ନେବାକୁ ପଡ଼ିବ । ଆମକୁ ଲୋକମାନଙ୍କୁ ଜଣେଇଦେବାକୁ ହେବ ଯେ ଅମୃତସରର ଶାସନ କାହା ହାତରେ ଅଛି । ଏପରି ବନ୍ଦୋବସ୍ତ କରିବାକୁ ହେବ ଯେ ଦରକାର ପଡ଼ିଲେ ଛ ଘଣ୍ଟାର ନୋଟିସରେ ମଧ ସେନା ଆମ ପାଖରେ ପହଁଚିବ । ........ ଆମର ଖାନ୍‌ବାହାଦୁର ଏବଂ ରାୟ୍‌ବାହାଦୁରମାନେ ଅକାମୀ । ସେମାନେ ଆମପାଇଁ ଜୀବନ୍ତ ମୁର୍ଦ୍ଦାର ମାତ୍ର । ମୁଁ ନୂଆ ନୂଆ ନେତାଙ୍କ ସହିତ ସଂପର୍କ ସ୍ଥାପନ ପାଇଁ ଚେଷ୍ଟା କରୁଛି । ମୁଁ ଭାବୁଥିଲି ଡ. କିଚ୍‌ଲୁଙ୍କୁ ଆମ ପକ୍ଷରେ ସାମିଲ କରିବାକୁ ଚେଷ୍ଟା କରିବି, ମାତ୍ର ସେ ମନପ୍ରାଣ ଚେତନାରେ ଏ ଆନ୍ଦୋଳନ ସହ ମିଶିସାରିଛନ୍ତି ।.....

## ୨ ଏପ୍ରିଲ 1919

ହିନ୍ଦୁ ମୁସଲମାନ ଏକତା ଓ ଦେଶ ଭକ୍ତିର ଭାବନାର ସ୍ପଷ୍ଟ ଉଦାହରଣ 30 ମାର୍ଚ୍ଚ ଏବଂ ୬ ଏପ୍ରିଲରେ ଅମୃତସରରେ ମିଳିଲା । ଏପ୍ରିଲ୍ ୨ ତାରିଖରେ ରାମନବମୀ ଥିଲା । ଲୋକେ ଏହାକୁ "ଜାତୀୟ୍ ଏକତା ଦିବସ" ଭାବରେ ପାଳନ କରିବାକୁ ସ୍ଥିର କଲେ । ଦ୍ୱିପ୍ରହରରେ ଶୋଭାଯାତ୍ରା ବାହାରିଲା, ମୁସଲମାନମାନେ ବହୁସଂଖ୍ୟାରେ ଭାଗନେଲେ । ହିନ୍ଦୁ ଦେବାଦେବୀଙ୍କ ଜୟ୍‌ଜୟ୍‌କାର୍ ସହିତ "ମହାତ୍ମାଗାନ୍ଧୀ କି ଜୟ୍", "ହିନ୍ଦୁ ମୁସଲମାନ୍‌କି ଜୟ୍" ଇତ୍ୟାଦିର ସ୍ଲୋଗାନ ଶୁଭିବାକୁ ଲାଗିଲା ।



ଏଇଠି ଏକ ଅଭିନବ ଉଦାହରଣ ଦେଖିବାକୁ ମିଳିଲା । ଅମୃତସରର ଇଂରେଜ ଡେପୁଟି କମିଶନର ଆଲାହାବାଦ ବ୍ୟାଙ୍କ୍‌ର ବାରଣ୍ଡାରେ ଠିଆ ହୋଇ ରାମନବମୀ ଶୋଭାଯାତ୍ରା ଦେଖୁଥିଲେ । ଯେତେବେଳେ ବ୍ୟାଣ୍ଡପାର୍ଟି ତାଙ୍କ ସାମନା ଦେଇ ଯାଇଥିଲେ, ତାଙ୍କୁ ଚିହ୍ନି ଅଟକି ଯାଇଥିଲେ ଏବଂ "ଗଡ୍ ସେଭ ଦି କିଂଗ" ଗୀତର ସ୍ୱର ଶୁଣାଇଥିଲେ । ଏହା ଥିଲା ଇଂରେଜଙ୍କର ରାଷ୍ଟ୍ରୀୟ ଗୀତ । ଏଥିରୁ ଏହା ସ୍ପଷ୍ଟ ହେଉଥିଲା ଯେ ଇଂରେଜମାନଙ୍କ ପ୍ରତି ହିନ୍ଦୁସ୍ଥାନୀମାନଙ୍କ ହୃଦୟରେ ଦ୍ୱେଷଭାବ ନଥିଲା । ବରଂ ସେମାନେ ତାଙ୍କର ରାଷ୍ଟ୍ରୀୟ ସଂଗୀତର ସ୍ୱରକୁ ବହୁତ ଆଦରର ସହିତ ବଜାଉଥିଲେ ।

ଶାନ୍ତିପୂର୍ଣ୍ଣ ଭାବରେ ଶୋଭାଯାତ୍ରା ହେଲା । କେଉଁଠି ବି କିଛି ବିଶୃଙ୍ଖଳା ହେଲାନାହିଁ, ଅନେକ ୟୁରୋପୀୟ ଲୋକ ଅମୃତସରର ରାସ୍ତାରେ ଖୁବ୍ ନିର୍ଭୟରେ ବୁଲୁଥିଲେ, ତାଙ୍କୁ କେହିହେଲେ କୌଣସି ପ୍ରକାରର ହଇରାଣ କଲେନାହିଁ ।

ଇଂରେଜ ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କ ପାଖରେ ଖବର ପହଁଚିଲା କି ରାମନବମୀର କାର୍ଯ୍ୟକ୍ରମ ଶାନ୍ତିପୂର୍ଣ୍ଣ ଭାବରେ ହେଲା । ତଥାପି ସେ ଡ. କିଚ୍‌ଲୁ ଓ ଡ. ସତ୍ୟପାଲଙ୍କୁ ଗିରଫ କରି ଧର୍ମଶାଳା (ହିମାଚଳ ପ୍ରଦେଶର ଏକ ପାର୍ବତ୍ୟ ସହର) ପଠାଇଦେବାପାଇଁ ନିଷ୍ପତ୍ତି କଲେ । ତାଙ୍କର ଆଶାଥିଲା କି ଏପରି ଉତ୍ତେଜନାପୂର୍ଣ୍ଣ ପଦକ୍ଷେପ ଦ୍ୱାରା ଅମୃତସରର ଲୋକ ଉତ୍ତେଜିତ ହୋଇ ଉଠିବେ, ଯାହାଦ୍ୱାରା ତାଙ୍କୁ ଯେ କୌଣସି ପଦକ୍ଷେପ ନେବାକୁ ସୁଯୋଗ ମିଳିଯିବ । ଏଣୁ ସେ ଏପ୍ରିଲ୍ 13 ତାରିଖ ସୁଦ୍ଧା ବହୁସଂଖ୍ୟାରେ ସେନା ଅମୃତସରକୁ ଅଣେଇବାର ବ୍ୟବସ୍ଥା କଲେ, ସେଦିନ ତାଙ୍କୁ ସହରରେ କିଛି "ଦୁଃସାହସିକ ପଦକ୍ଷେପ" ନେବାକୁ ଥିଲା । ବିଭିନ୍ନ ସ୍ଥାନରେ ପୋଲିସଙ୍କୁ ନିଯୁକ୍ତ କରାଗଲା ।

## 10 ଏପ୍ରିଲ୍ 1919

ଏପ୍ରିଲ୍ 10 ରେ ହିଁ ଡ. କିଚଲୁ ଓ ଡ. ସତ୍ୟପାଲଙ୍କୁ ଡେପୁଟି କମିଶନରଙ୍କ ଘରକୁ

ତକାଗଲା ଏବଂ ସେଠାରୁ ଦୁଇଜଣଙ୍କୁ ମୋଟରକାର୍ ଦ୍ୱାରା ଧର୍ମଶାଳା ପଠାଇଦିଆଗଲା ।

ମାଇକେଲ୍ ଓ'ଡ୍ୱାଯାର ଗାନ୍ଧୀଜୀଙ୍କୁ ଅମୃତସର ଓ ଦିଲ୍ଲୀରେ ପ୍ରବେଶ ନକରାଇ ଦେବାପାଇଁ ନିଷ୍ପତ୍ତି ନେଲେ । ଗାନ୍ଧୀଜୀଙ୍କୁ ବମ୍ବେ ସହରର ବାହାରକୁ ନଯିବାପାଇଁ ସୂଚିତ କରାଗଲା । ଏହି ଆଦେଶ ସତ୍ତ୍ୱେ ଗାନ୍ଧୀଜୀ ପଞ୍ଜାବ ଯାତ୍ରାକଲେ । ଯେତେବେଳେ ତାଙ୍କୁ ରାସ୍ତାରେ ରୋକାଗଲା, ସେତେବେଳେ ସେ ଆଦେଶ ମାନିବାକୁ ମନାକରିଦେଲେ । ସେ କହିଲେ, "ମୁଁ ଏକ ଜରୁରୀ ନିମନ୍ତ୍ରଣରେ ଅମୃତସର ଯାଉଛି । ସେଠି ଅଶାନ୍ତି ସୃଷ୍ଟି କରିବା ପାଇଁ ଯାଉନାହିଁ । ମୁଁ ଦୁଃଖିତ ଯେ ମୁଁ ଏ ଆଦେଶ ପାଳନ କରିପାରିବିନାହିଁ ।"

ପଲବଲ ଷ୍ଟେସନ୍‌ରେ ଗାନ୍ଧୀଜୀଙ୍କୁ ରେଳଗାଡିରୁ ଓହ୍ଲାଇ ବମ୍ବେ ଯାଉଥିବା ଗାଡ଼ିରେ ବସେଇ ଦିଆଗଲା । ସେ ଦେଶବାସୀଙ୍କୁ କହିଲେ, "ମୋର ଗିରଫଦାରୀରେ ଦୁଃଖ କର ନାହିଁ । ଏପରି କାମ କର ନାହିଁ ଯାହା ମିଥ୍ୟା ଓ ହିଂସାର ଦ୍ୟୋତକ ହେବ ।"

ଗାନ୍ଧୀଜୀଙ୍କର ଗିରଫରେ ଲୋକମାନେ ଭାବବିହ୍ୱଳ ହୋଇ କୌଣସି ପ୍ରକାରର ହିଂସାକାଣ୍ଡ କରି ପକାଇବେ, ଅଫିସରମାନେ ସେଥିପାଇଁ ଆଗରୁ ପ୍ରସ୍ତୁତ ହୋଇଗଲେ । ଅମୃତସରର ଦୁର୍ଗ ପାଖରେ ଆଦେଶ ଜାରୀ ହେଲା ଯେ ତୋପ ଗୁଡ଼ିକର ମୁହଁକୁ ଉପଯୁକ୍ତ



ଦିଗକୁ ରଖାଯାଉ । ଯଦି ଲୋକେ ମାଡ଼ି ଆସନ୍ତି, ତେବେ ଗୁଳି ଚଳେଇ ଦିଆଯାଉ ।

ଡ଼: କିଚ୍‌ଲୁ ଏବଂ ଡ.: ସତ୍ୟପାଲଙ୍କର ଗିରଫ ଖବର କାନରେ ପଡ଼ିବାପୂର୍ବରୁ ସହରରେ ହରତାଳ ଆରମ୍ଭ ହୋଇଯାଇଥିଲା. କଂଗ୍ରେସ୍‌ର କାର୍ଯ୍ୟକର୍ତ୍ତାମାନେ ଲୋକମାନଙ୍କୁ ନିଜର ଦୋକାନପତ୍ର ବନ୍ଦକରି 'ଏଡ଼ିସନ୍' ପାର୍କରେ ଏକତ୍ରିତ ହେବାପାଇଁ କହିଲେ । ଯୋଜନା ଥିଲା ଯେ ପାର୍କରେ ଏକାଠିହୋଇ ସବୁ ଲୋକ ସ୍ଥାନୀୟ ଡ଼େପୁଟି କମିସନର୍‌ଙ୍କ ଘରକୁ ଯିବେ; ଏବଂ ସେହି ଦୁଇ ନେତାଙ୍କର ମୁକ୍ତିପାଇଁ ଦାବୀ କରିବେ ।

ସାଢ଼େ ଏଗାରଟା ବେଳେ ଆଖପାଖର ଦୋକାନ ବନ୍ଦ କରି ଲୋକମାନେ ହାଲ୍–ବଜାରରେ ଏକତ୍ରିତ ହେବାକୁ ଲାଗିଲେ । ଭିଡ଼ ଅତିଶୀଘ୍ର ହାଲ ଗେଟ୍ ଦେଇ ହାଲ ପୋଲ ପର୍ଯ୍ୟନ୍ତ ପହଞ୍ଚିଗଲା ଯାହାର କି ସେମୁଣ୍ଡରେ ଘୋଡ଼ାଉପରେ ବିଜେ ପୁଲିସ ବାହିନୀ ପହଞ୍ଚିଯାଇଥିଲେ । ସେପର୍ଯ୍ୟନ୍ତ କୌଣସି ପ୍ରକାରର ଗୋଳମାଳ ହୋଇନଥିଲା । ଯେତେବେଳେ ଲୋକମାନଙ୍କର ଗହଳି ଟାଉନ୍ ହଲ ଦେଇ ଯାଉଥିଲା, କେତେକ ଇଂରେଜ ଲୋକ ସାମନାକୁ ଚାଲିଆସିଥିଲେ । ମାତ୍ର କେହି ସେମାନଙ୍କୁ କିଛି କହିଲେ ନାହିଁ । ପରନ୍ତୁ ହାଲ ବ୍ରିଜର ବିପରୀତ ମୁଣ୍ଡରେ ଘୋଡାଉପରେ ବସି ଅପେକ୍ଷାରତ ପୁଲିସ ଲୋକମାନଙ୍କୁ ରୋକି ସେମାନଙ୍କୁ ଆଗକୁ ନବଢ଼ିବା ପାଇଁ ନିର୍ଦ୍ଦେଶ ଦେଲେ । କେତେକ ଲୋକ ଆଗକୁ ଯିବାପାଇଁ ଚେଷ୍ଟା କରିଥିଲେ, ମାତ୍ର ଅନ୍ୟମାନେ ସେମାନଙ୍କୁ ଆଗକୁ ନଯିବା ପାଇଁ ରୋକୁଥିଲେ । ଏଥିମଧ୍ୟରେ ଡେପୁଟି କମିସନର୍ ଇର୍‌ବିଙ୍ଗ ଏବଂ କ୍ୟାପଟେନ୍ ମେସି ଘଟଣା ସ୍ଥଳରେ ଆହୁରି ଗୋଟିଏ ପୁଲିସ୍ ବାହିନୀ ସହ ପହଞ୍ଚିଗଲେ । ସେତିକିବେଳେ ଦୁଇଜଣ ଫୌଜି ଘୋଡାରୁ ଓହ୍ଲାଇ ଅନ୍ୟପଟେ ସୈନ୍ୟସଜ୍ଜା କଲେ ଏବଂ ଲୋକମାନଙ୍କ ଉପରେ ଗୁଳିମାଡ଼ ଆରମ୍ଭ କରିଦେଲେ । କେତେ ଲୋକ ଘଟଣାସ୍ଥଳରେ ହିଁ ମଲେ, ଆଉ କେତେ ଆହତ ହେଲେ । ଭିଡ଼ ଚକିତ ହୋଇ ଚାହିଁ ରହିଗଲା ।

ପ୍ରାୟ୍ ଗୋଟେ ବେଳକୁ ଡ଼େପୁଟି ପୁଲିସ୍ ସୁପରିନ୍‌ଟେଣ୍ଡେଣ୍ଟ ପ୍ଲୋମର୍ ସେଠି ପହଞ୍ଚି

ଗଲେ । ତାଙ୍କ ସାଥିରେ 24 ଜଣ ପୁଲିସ୍ ଏବଂ 7 ଜଣ ଘୋଡ଼ାଗୁଳକ ଭିଡକୁ ପଛକୁ ଫେରାଇଲେ । ସେତିକି ବେଳେ ପଦାତିକ ସୈନ୍ୟବାହିନୀ ପହଞ୍ଚିଗଲା ।

ଗହଳି ପୂରାପୂରି ଉତ୍ତେଜିତ ହୋଇଯାଇଥିଲା । ଏକପକ୍ଷରେ ସେମାନଙ୍କ ନେତାଙ୍କୁ ମୁକ୍ତି କରେଇବାରେ ଅସଫଳତା, ଅନ୍ୟପକ୍ଷରେ ସାଥିମାନେ କ୍ଷତ ବିକ୍ଷତ । ସେମାନଙ୍କର ହୃଦୟରେ କ୍ରୋଧାନଳ ଜଳିଉଠିଥିଲା, ମାତ୍ର ଚୁପ୍‌ଚାପ୍ ମୃତ ସାଥିମାନଙ୍କୁ କାନ୍ଧରେ ପକାଇ ହାଲ୍ ବ୍ରିଜ ଆଡ଼କୁ ସେମାନେ ନେଲେ । ଖବର ମିଳିଲା ଯେ ସହରର ବିଭିନ୍ନ ସ୍ଥାନରେ ଆହୁରି ପୁଲିସ୍ ଚୁର୍ଙ୍ଗି ବଢ଼େଇ ଦିଆଗଲାଣି, ଏଣୁ ସେମାନଙ୍କର ରାଗ ମଧ ଆହୁରି ବଢ଼ିଗଲା ଏବଂ ଉତ୍ତେଜିତ ଜନତା କୈରନ୍ ପୋଲ ଆଡ଼କୁ ମାଡ଼ିଗ୍ଲିଲେ । ତାପରେ ଲୋକମାନେ ହାତରେ ଲାଠି, ଠେଙ୍ଗା ଆଦି ନେଇ ଆସିଥିଲେ ।

ପୋଲର ଏପଟେ ଉତ୍ତେଜିତ ଜନତା ଏବଂ ସେପଟେ ଡେ଼ପୁଟି କମିସନର ଇର୍‌ବିଂଗ୍ ଏବଂ ସଶସ୍ତ୍ର ପୁଲିସ । ଆଗାମୀ ବିପଦକୁ ଅନୁମାନ କରି ଦୁଇଜଣ ଓକିଲ ଲତିଆ ଏବଂ ମକ୍‌ବୁଲ୍ ମହମ୍ମଦ୍ ଲୋକ ଓ ଅଫିସର୍‌ମାନଙ୍କୁ ଶାନ୍ତି ରଖିବା ପାଇଁ ଅନୁରୋଧ କଲେ । ସେହିସମୟରେ ଭିଡ଼ ଭିତରୁ କେତେକ ଲୋକ ପୁଲିସ ଉପରକୁ ପଥର ଏବଂ କାଠ ଟୁକୁଡ଼ା ଫିଙ୍ଗିଲେ । ପୁଲିସ୍ ସଙ୍ଗେ ସଙ୍ଗେ ଗୁଳି ମାରିବାକୁ ଲାଗିଲା । 20 ଜଣଙ୍କର ମୃତ୍ୟୁ ହେଲା । ଆହୁରି ଅଧିକ ଆହତ ହେଲେ । ଗୁଳି ଚ଼ଳେଇବା ପୂର୍ବରୁ ସେମାନେ କୌଣସି ସୂଚନା ଦେଇନଥିଲେ । ଓକିଲ ଦୁହେଁ ଶେଷ ମୂହୁର୍ତ୍ତରେ ବର୍ତ୍ତିଗଲେ । ମକବୁଲ୍ ମହମ୍ମଦ୍ ଦୌଡି ଦୌଡି ହାସପାତାଳକୁ ଗ୍ଲିଗଲେ ଯାହାଫଳରେ ଆହତ ମାନଙ୍କୁ ଷ୍ଟ୍ରେଚ଼ର ଦ୍ୱାରା ହାସପାତାଳରେ ପହଞ୍ଚାଯାଇ ପାରିବ । ମାତ୍ର ଇଂରେଜ ଅଫିସର୍ ପ୍ଲୋମର ହୁକୁମ ଦେଲେ କି ହା୍‌ସପାତାଳରୁ କୌଣସି ପ୍ରକାର ସାହାଯ୍ୟ ମିଳିବ ନାହିଁ ।

ଲୋକମାନେ ରାଗରେ ପାଗଳ ପ୍ରାୟ ହେଉଥିଲେ । କିଛିଲୋକ ତାରଘରେ ତାଲା ଲଗାଇଦେଲେ ଓ ତାର ବିଭାଗ ଅଧିକାରୀଙ୍କୁ ତାଙ୍କ ଘରୁ ବାହାରକୁ ଘୋଷାରି



ନେଇଆସିଲେ । କିନ୍ତୁ ରେଳଷ୍ଟେସନରୁ ଫୌଜିଦଳ ଆସି ଅଧିକାରୀଙ୍କୁ ବଞ୍ଚାଇଦେଲେ ।

ସେହିସମୟରେ କିଛି ଲୋକ ରେଳ ମାଲଗୋଦାମ ଉପରେ ଚଢ଼ାଉ କଲେ । ଷ୍ଟେସନ ସୁପରିନ୍‌ଟେଣ୍ଡେଣ୍ଟ ବହୁତ କଷ୍ଟରେ ବର୍ତ୍ତିଗଲେ, ମାତ୍ର ଜଣେ ଗାର୍ଡ ଲୋକଙ୍କ ଦ୍ୱାରା ମଲେ । ତିନିଜଣ ଇଂରେଜ ଲୋକ ନ୍ୟାସନାଲ୍ ବ୍ୟାଙ୍କରେ ମରିଗଲେ । ଲୋକମାନେ ବ୍ୟାଙ୍କ କୋଠାରେ ନିଆଁ ଲଗାଇଦେଲେ । ବ୍ୟାଙ୍କର କପଡାଭରା ଗୋଦାମ ଘେରିକରି ନେଇଗଲେ । ସେମାନେ ଏଲାଂୟସ ବ୍ୟାଙ୍କର ଇଂରେଜ ମ୍ୟାନେଜରଙ୍କୁ ହତ୍ୟାକରି ଧନସମ୍ପତ୍ତି ଲୁଟିନେଲେ । ଗ୍ରର୍ଟର୍ଡ ବ୍ୟାଙ୍କ୍ ଉପରେ ମଧ ଚଢ଼ାଉ କରାଗଲା, କିନ୍ତୁ ମ୍ୟାନେଜର ଏବଂ ତାଙ୍କର ସହାୟକଙ୍କୁ ହିନ୍ଦୁସ୍ଥାନୀ କର୍ମଗ୍ରୀମାନେ ରକ୍ଷାକଲେ । ଜଣେ ଇଂରେଜ ମହିଳା ମିସ୍ ଶେରଉଡ୍‌ଙ୍କୁ ମଧ ଆକ୍ରମଣ କରାଗଲା, ପୁଣି ଜଣେ ଭାରତୀୟ ତାଙ୍କୁ ରକ୍ଷାକରିବାରେ ସଫଳ ହେଲେ । ଆଉ ଅନେକ କୋଠାବାଡ଼ିକୁ ନିଆଁ ଲଗାଇଦିଆଗଲା, ଲୁଟପାଟ୍ ମଧ୍ୟ ହେଲା ଏବଂ କେତେଜଣଙ୍କର ମୃତ୍ୟୁ ହେଲା ।

ଏହିପରି ଗୋଟିଏ ମସ୍ତବଡ଼ ଜନଗହଳି ଭିତରେ ଗୁଳିମାରିବା ଉଚିତ ଥିଲା କି ?

ପରେ ଡେପୁଟି କମିସନର ଇରବିଙ୍ଗ୍ ସ୍ୱୀକାର କଲେ ଯେ ଗୁଳି ଚ଼ଳେଇବା ପୂର୍ବରୁ ଗହଳି ଭିତରେ କାହାର ମଧ୍ୟ ଇଂରେଜ ମାନଙ୍କ ପ୍ରତି ବିରୋଧ ଭାବନା ନଥିଲା । ସେ ନିଜେ ମାନିଲେ ଯେ ଲୋକମାନଙ୍କ ଉପରେ ଗୁଳି ଚ଼ଳେଇବା ଭୁଲ୍‌ଥିଲା :

ଲୋକମାନେ ଇଂରେଜମାନଙ୍କୁ ଯେଉଁ ସହସା ଆକ୍ରମଣ କରିଥିଲେ. ତାହା ଅପ୍ରତ୍ୟାଶିତ ଥିଲା । ଉନ୍ମାଦନା ଗୁଳି ଚ଼ଳେଇବା ପରେ ହିଁ ଉପୁଜିଥିଲା । ଗହଳିକୁ ଘୋଡାସବାର ପୁଲିସ ତଥା ସେନା ତାଙ୍କ ଉଦ୍ୟମରେ ଆରାମରେ ରୋକି ପାରିଥାନ୍ତେ ।

ଏବେ ସେନାବାହିନୀ ଅମୃତସର ପହଞ୍ଚିବାକୁ ଲାଗିଲେ । 10 ଏପ୍ରିଲ ସନ୍ଧ୍ୟାରେ ଲେପ୍‌ଟନାଣ୍ଟ ଗଭର୍ଣ୍ଣରଙ୍କୁ ଅମୃତସର ଘଟଣା ବିଷୟରେ ସୂଚନା ମିଳିଲା । ସେ ତୁରନ୍ତ କମିସନର କିଚିନ୍‌ଙ୍କୁ ଅମୃତସର ପଠାଇଦେଲେ ।

## 11 ଏପ୍ରିଲ 1919

11 ଏପ୍ରିଲ ଦିନ ଅମୃତସରରେ ମାର୍ଶାଲ ଆଇନ୍ ଜାରି କରାଗଲା । ଆଇନ ଅନୁସାରେ ମୃତ ଶବ ସଙ୍ଗରେ ଚ଼ାରିରୁ ଅଧିକ ଲୋକ ଯାଇପାରିବେ ନାହିଁ । ପରେ ଏ ସଂଖ୍ୟାକୁ 4 ରୁ 8 କୁ ବଢ଼ାଇ ଦିଆଗଲା । ଶୋଭାଯାତ୍ରା ଏବଂ ସାଧାରଣ ସଭା ସମିତିକୁ ସମ୍ପୂର୍ଣ୍ଣ ବନ୍ଦକରାଯାଇ ଥିଲା । ଯେକୌଣସି ସ୍ଥାନରେ 4 ରୁ ଅଧିକ ଲୋକ ଠିଆହୋଇ କଥାବାର୍ତ୍ତା କରୁଥିଲେ ସେମାନଙ୍କୁ ଦେଖିବାମାତ୍ରେ ଗୁଳିମାରିବାକୁ ଆଦେଶ ଦିଆଗଲା । ମୃତକଙ୍କର ମୃତ ଦେହ ପନ୍ଦର ମିନିଟ୍ ଅନ୍ତରାଳରେ ଉଠେଇନେଇ ଦାହକରିବାକୁ ଆଦେଶ ଥିଲା ଏବଂ ସାଥିରେ କେବଳ ଅଧିକରୁ ଅଧିକ 8 ଜଣ ଲୋକ ଶ୍ମଶାନକୁ ଯାଇପାରିବେ ।

ଲୋକମାନେ ମୃତ ଦେହର ଅନ୍ତେଷ୍ଟିକ୍ରିୟା ନିଜ କୁଟୁମ୍ବଙ୍କ ସହ କରିବା ପାଇଁ ଚ଼ାହୁଁଥିଲାବେଳେ ପ୍ରଶାସନ ନିଜର କାନ ବନ୍ଦ କରିଦେଲା । ଇଂରେଜଙ୍କର ରାଗ ବଢ଼ିଯାଇଥିଲା ଯେହେତୁ ଇଂରେଜ ଲୋକଙ୍କର ହତ୍ୟା କରାଯାଇଥିଲା । ସେମାନେ ରକ୍ତ

ବଦଳରେ ରକ୍ତ ଗ୍ରହୁଥିଲେ । ଯେଉଁଠି ଆଇନ ଅମାନ୍ୟ ଆଶଙ୍କାଥିଲା, ସେନାକୁ ଡ଼କରା ଯାଉଥିଲା । ଏପରିକି ଅମୃତସର ଉପରେ ବୋମା ପକାଇବା ମଧ୍ୟ ଅସମ୍ଭବ ନଥିଲା ।

ସେଇ ଦିନମାନଙ୍କରେ ଅମୃତସରର ଜଣାଶୁଣା ଇଂରେଜମାନଙ୍କ ମଧ୍ୟରେ ମିଷ୍ଟର ବାଥନ୍ ନାମକ ଜଣେ ଭଦ୍ରବ୍ୟକ୍ତି ଏକ ମହାବିଦ୍ୟାଳୟର ଅଧକ୍ଷ ରୂପେ କାମ କରୁଥିଲେ । ସେ ନିଜ ବିବେକ ଏବଂ ମାନସିକ ସମାନତା ରକ୍ଷାକରି କାମ କରିବାକୁ ସମସ୍ତଙ୍କୁ ଅନୁରୋଧ କଲେ । ହେଲେ ଡ଼େପୁଟି କମିସନର କହିଲେ, "କଥାବାର୍ତ୍ତା ବନ୍ଦ କର । ଆମେ ଆମର ମୃତକମାନଙ୍କର ଶବ ଦେଖିଛୁ । ଆମର ମସ୍ତିଷ୍କର ସ୍ଥିତି ଆଗପରି ଅବସ୍ଥାରେ ନାହିଁ ।"

ପରେ ସାମାନ୍ୟ ପରିବର୍ତ୍ତନ ଆସିଲା । ମାତ୍ର ଆଦେଶ ଥିଲା ଯେ ଦ୍ୱିପ୍ରହର ଦୁଇଟା ପର୍ଯ୍ୟନ୍ତ ସମସ୍ତ ଅନ୍ତ୍ୟେଷ୍ଟିକ୍ରିୟା ଶେଷ ହୋଇଯିବା ଉଚିତ । ଦୁଇଟା ବେଳେ ବିଗୁଲ ବାଜି ଯଦି ଗହଳି ନଭାଂଗିବ ତେବେ ପନ୍ଦର ମିନିଟ ପରେ ଗୁଳି ଗ୍ଲଲିବା ଆରମ୍ଭ ହୋଇଯିବ ।

ଏପ୍ରିଲ 11 ତାରିଖ ସନ୍ଧ୍ୟାରେ (ଜଳନ୍ଧର ପୁଲିସ କମାଣ୍ଡର) ବ୍ରିଗେଡ଼ିୟର ଜେନେରାଲ ଆର୍.ଇ.ଏଚ୍ ଡ଼ାୟାର ଅମୃତସରରେ ପହଞ୍ଚିଲେ ।

## 12 ଏପ୍ରିଲ୍ 1919

ଏପ୍ରିଲ 12 ତାରିଖ ଦିନ ଜେନେରାଲ ଡାୟାର 125 ଜଣ ଇଂରେଜ ଏବଂ 310 ଜଣ ଭାରତୀୟ ସେନାଙ୍କୁ ନେଇ ଅମୃତସର ସହରରେ ମାର୍ଚ୍ଚ କଲେ । ରାସ୍ତାରେ ଗୋଟିଏ ସ୍ଥାନରେ ବହୁତ ଗହଳି ଥିଲା, ଭିଡ଼କୁ ଘଉଡେଇବାରେ ଟିକିଏ ଅସୁବିଧା ହେଲା, ମାତ୍ର ଲୋକମାନେ ସାମନାରୁ ପଳାଇଗଲେ ।

ସନ୍ଧ୍ୟା ଗ୍ରରିଟା ବେଳେ ହିନ୍ଦୁ ସଭା ହାଇସ୍କୁଲରେ ଗୋଟିଏ ସାଧାରଣ ସଭାଟିଏ

ଆରମ୍ଭ ହେଲା । ଏ ସଭାରେ ନିଷ୍ପତ୍ତି ହେଲା ଯେ ଆସନ୍ତା କାଲି ଜାଲିଆନାୱାଲା ବାଗରେ ଗୋଟିଏ ସାଧାରଣ ସଭାର ଆୟୋଜନ କରାହେବ । ଡ଼: ସତ୍ୟପାଲ ଏବଂ ଡ଼: କିଚଲୁଙ୍କଠାରୁ ଆସିଥିବା ଚିଠିକୁ ସମସ୍ତଙ୍କ ସାମନାରେ ପଢ଼ି ଶୁଣାଯିବ । ସଭାରେ ଏହା ମଧ୍ୟ ଆହ୍ୱାନ କରାଗଲା ଯେ, ଅଧିକରୁ ଅଧିକ ଲୋକ ତ୍ୟାଗ ପାଇଁ ପ୍ରସ୍ତୁତ ରୁହନ୍ତୁ । ତା ପରଦିନ ମଧ୍ୟ ହରତାଳ ଆରମ୍ଭ ହେବ ଏବଂ ଏ ହରତାଳ ଡ଼: କିଚଲୁ ଏବଂ ଡ଼: ସତ୍ୟପାଲଙ୍କୁ ମୁକ୍ତି ଦିଆଯିବା ପର୍ଯ୍ୟନ୍ତ ଚାଲିବ ।



ଜେନେରାଲ୍ ଡାୟାର୍

# ହତ୍ୟାକାଣ୍ଡ



ଏପ୍ରିଲ 13 ତାରିଖ ବୈଶାଖୀ ପର୍ବ ଥିଲା । ସନ 1699 ମଇମାସରେ ଏଇଦିନ ଗୁରୁ ଗୋବିନ୍ଦ ସିଂହ ଖାଲସା ପ୍ରତିଷ୍ଠା କରିଥିଲେ । ଅମୃତସରରେ ଏ ପର୍ବ ବହୁତ ଆନନ୍ଦ ଏବଂ ଉଲ୍ଲାସରେ ପାଳନ କରାଯାଇଆସୁଥିଲା ।

ମାତ୍ର ସେଦିନ ବୈଶାଖୀ ପର୍ବର ବାତାବରଣ ସେମିତି ନଥିଲା, ଗତ ଚାରିଦିନ ହେଲା ହରତାଳ ଚାଲିଥିଲା । 10 ଏପ୍ରିଲ ଦିନ ଗୁଳିରେ ମରିଥିବା ଶବମାନଙ୍କୁ ଦାହ ପାଇଁ ନିଆଯାଉଥିଲା ।

ଇଂରେଜ ଅଫିସରମାନେ ଜାଣିଥିଲେ ଯେ ବୈଶାଖୀ ଦିନ ହଜାର ହଜାର ଲୋକ ସ୍ୱର୍ଣ୍ଣମନ୍ଦିରକୁ ଦର୍ଶନପାଇଁ ଆସିବେ ଏବଂ ଜାଲିଆନାୱାଲା ବାଗରେ ପହଞ୍ଚିବେ ।

13 ଏପ୍ରିଲ ସକାଳେ ଜେନେରାଲ ଡାୟାର ସହରରେ ପୁଣି ସୈନିକ ମାର୍ଚ୍ଚ କରାଇ ସ୍ଥାନେ ସ୍ଥାନେ ଢୋଲ ବଜାଇ ଘୋଷଣା କରାଇଲେ;

"ଅମୃତସରର କୌଣସି ବାସିନ୍ଦା ବିନା ଅନୁମତିରେ ସହର ବାହାରକୁ ଯାଇପାରିବ ନାହିଁ । କେହି ସନ୍ଧ୍ୟା ୫ ଟା ପରେ ଘରୁ ବାହାରକୁ ପାଦ ରଖିପାରିବ ନାହିଁ। ୫ ଟା ପରେ ଯିଏ ବାହାରକୁ ଆସିବ ତାକୁ ଗୁଳି କରାଯିବ । କୌଣସି ପ୍ରକାରର ଶୋଭାଯାତ୍ରା ବାହାରି ପାରିବ ନାହିଁ । ଯେକୌଣସି ଜାଗାରେ ଚାରିଜଣରୁ ଅଧିକ ଲୋକ ଏକାଠି ହେଲେ ବେଆଇନ୍ ଘୋଷଣା କରାଯିବ ଏବଂ ଦରକାର ପଡିଲେ ସେନା ଦ୍ୱାରା ସେମାନଙ୍କୁ ତଡ଼ି ଦିଆଯିବ ।"

ଜେନେରାଲ ଡାୟାରଙ୍କ ସେନାମାର୍ଚ୍ଚପରେ କେତେଜଣ ଯୁବକ ଖାଲିଟିଣ ବଜାଇ ଘୋଷଣା କଲେ ଯେ, ସନ୍ଧ୍ୟା ସାଢ଼େ ଚାରିଟା ବେଳେ ଜାଲିଆନାୱାଲା ବାଗରେ ସଭା ହେବ ।

12ଟା ବାଜି 40 ମିନିଟ୍ ହୋଇଥିଲା । ଡାୟାର ସେପର୍ଯ୍ୟନ୍ତ ସହରରେ ଉପସ୍ଥିତ ଥିଲେ । ତାଙ୍କୁ ଖବର ମିଳିଲା ଯେ ସବୁ ସ୍ଥାନରେ ପ୍ରଚାର ଚାଲିଛି, ସନ୍ଧ୍ୟା ସାଢ଼େ ଚାରିଟା ବେଳେ ଜାଲିଆନାୱାଲା ବାଗରେ ସାଧାରଣ ସଭା ହେବ । ପୁରା ସହରରେ ସେନା ଏବଂ ପୁଲିସଙ୍କୁ ଜଗାଇ ଦିଆଗଲା । ତଥାପି ଡାୟାର ପାଖରେ 400 ସୈନିକ ରହିଲେ ।

ଦିନ 2ଟା ଠାରୁ ଲୋକମାନେ ଜାଲିଆନାୱାଲା ବାଗରେ ରୁଣ୍ଡ ହେଲେ । 4ଟା ବେଳେ ସୂଚନା ମିଳିଲା ଯେ ଅନେକେ ଜାଲିଆନାୱାଲା ବାଗରେ ପହଞ୍ଚିଗଲେଣି ।

ଏଣୁ ଜେନେରାଲ୍ ଡାୟାର ତୁରନ୍ତ ସେନାବାହିନୀ ସହ ଜାଲିଆନାୱାଲା ବାଗ ଆସିବା ପାଇଁ ପ୍ରସ୍ତୁତି ଆରମ୍ଭ କଲେ । ଆଗରେ ମୋଟରକାର ଏବଂ ତାଙ୍କ ସହିତ କାରରେ ଖୋସାମଦିଆ ଅଫିସର କ୍ୟାପଟେନ୍ ବ୍ରିଗ୍ସ ବସିଥିଲେ । ପଛରେ ଥିଲା ପୁଲିସ୍ ଗାଡ଼ି ଯେଉଁଥିରେ ପୁଲିସ୍ ସୁପରିନ୍‌ଟେଣ୍ଡେଣ୍ଟ ରିହିଲ୍ ଏବଂ ପ୍ଲୋମର ବସିଥିଲେ ।

ରାସ୍ତାରେ ସମୁଦାୟ ପାଞ୍ଚଟି ସ୍ଥାନରେ ପ୍ରତି 40 ଜଣ ସେନାକୁ ନେଇ ଗୋଟିଏ ଦଳ ରଖାଗଲା । ସେନାବାହିନୀର ଗୋଟିଏ ଦଳ ଜେନେରାଲ ଡ଼ାୟାର ସାଥିରେ ଜାଲିଆନାୱାଲା ବାଗ ଭିତରକୁ ଗଲେ । ତାହାଙ୍କ ସହିତ ଯେଉଁ ସବୁ ସୈନିକ ଥିଲେ, ସମସ୍ତେ ଭାରତୀୟ ଥିଲେ । 50 ଜଣ ଭାରତୀୟ ସୈନିକଙ୍କ ପାଖରେ ବନ୍ଧୁକ ଥିଲା

ଏବଂ 40 ଜଣ ଗୋର୍ଖା ସିପାହି ଥିଲେ, ଯାହାଙ୍କ ପାଖରେ କେବଳ ମୁନିଆ ଭାଲା ଥିଲା ।

ଆଗରୁ କୁହାଯାଇଛି ଯେ ଜାଲିଆନାୱାଲା ବାଗ ଗୋଟିଏ ଅସମତଳ ପଡ଼ିଆ ଯାହାର ଚାରିପାଖରେ ତିଆରି ଘରମାନ ଓ ଦକ୍ଷିଣ ପାର୍ଶ୍ୱରେ ଖାଲି ଜାଗା ଥିଲା । ଏଠି ମଧ୍ୟ ପ୍ରାୟ ପାଞ୍ଚ ଫୁଟ୍ ଉଚ୍ଚାର ପାଚେରୀ ଥିଲା । 4 ରୁ 5 ଟି ଅଣଓସାରିଆ ଗଳି ପଡିଆକୁ ଛୁଉଁଥିଲା । ବଜାର ପଟରୁ ଯେଉଁ ଗଳିସବୁ ବାହାରିଥିଲା, ସେସବୁର ଜମି ଟିକିଏ ଉଚ୍ଚା ଥିଲା । ବାଗ୍ ଭିତରେ ଗୋଟେ ସମାଧି ଏବଂ ଖୋଲା ମୁହଁବାଲା ବାମ୍ଫିଂଟିଏ ଥିଲା ।

ଡ଼ାୟାର ସେନାସହ ବଜାରପଟରୁ ଆସିଲେ । ବଜାରପଟୁ ରାସ୍ତା ପତଳା ଥିଲା । ଡ଼ାୟାର ଗାଡ଼ିଗୁଡିକୁ ଗଳି ବାହାରେ ଛାଡ଼ି ଆସିଲେ ଏବଂ ବାଗ୍‌ରେ ସେମିତି ପହଞ୍ଚିଗଲେ ।

ସେ ସମୟରେ ବାଗ୍‌ରେ ଗହଳି ଥିଲା । ପ୍ରାୟ 20 ହଜାର ଲୋକଥିଲେ । ଜଣେ ଲୋକ ପେଣ୍ଡାଲ ଉପରେ ଠିଆ ହୋଇ ଭାଷଣ ଦେଉଥିଲା । ଶାନ୍ତିପୂର୍ଣ୍ଣ ବାଗ୍ ଭିତରେ ଡ଼ାୟାର ସେନାକୁ ନେଇ ଠିଆ ହେଲେ ଓ ଡ଼ାହାଣ ପଟେ 25 ଜଣ ଓ ବାମପଟେ 25 ଜଣ ସେନାଙ୍କୁ ଠିଆ କରି ବିନା ସୂଚନାରେ ଗୁଳି ଚଳେଇବା ପାଇଁ ଆଦେଶ ଦେଲେ ।

ସଭାରେ ବସିଥିବା ଲୋକେ ଭୀତତ୍ରସ୍ତ ହୋଇଗଲେ । ପଳାଇଯିବା ପାଇଁ କୌଣସି ସିଧା ସ୍ଥାନନଥିଲା । ଗୁଳିମାଡ଼ରୁ ବର୍ତ୍ତିବାପାଇଁ ସମସ୍ତେ ଦଉଡିବାକୁ ଲାଗିଲେ । କୋଳାହଳ ବାଘ ଛେଳି ଖେଳ ଖେଳିଲାପରି ହେଲା । ଯେଉଁମାନେ ଶୋଭାଯାତ୍ରାରୁ ଆସିଥିଲେ, ପାଟିକରି କହିଉଠିଲେ, ଭାଇମାନେ ତଳେ ଶୋଇଯାଅ । ହେଲେ ଭୟ ଏବଂ ନିଜକୁ ବର୍ତ୍ତେଇବା ଚେଷ୍ଟାରେ କେହି ଶୁଣିଲେନି । ଲୋକମାନେ ଯେଉଁଆଡ଼କୁ ଦୌଡିଲେ ସେପଟର ରାସ୍ତା ବନ୍ଦ । ଆଗରେ ପାଚେରୀ । ବାହାରକୁ ଯିବା ପାଇଁ ଯେତେ ସବୁ ଗଳି ଥିଲା ସେଥିରେ ଲୋକଙ୍କ ଭିଡ । ସମସ୍ତେ ଦୌଡ଼ି ଯିବାକୁ ଚେଷ୍ଟାକରୁଥିଲେ । ଏହାକୁ ଦେଖି ଡ଼ାୟାର ଆଦେଶ ଦେଲେ ଯେ ଯେଉଁ ଆଡୁ ଲୋକ ଦୌଡିକରି ପଳାଇ ଆସୁଛନ୍ତି, ଗୁଳି ଚଳାଅ । କିଛି ଲୋକ ଗୁଳିରେ ମଲେ, କେତେ ପାଦ ତଳେ ଚକଟି ହୋଇ ଅଣନିଃଶ୍ୱାସି

ହେଲେ । ଅଧିକାଂଶ ଲୋକ ଚେଷ୍ଟା କରୁଥିଲେ ପାଚେରୀ ଡେଇଁ ପଳେଇବାକୁ, ମାତ୍ର ଗୁଳିମାଡ଼ରେ ତଳେ ପଡିଗଲେ । ଆଉ କିଛି ଲୋକ ଦୌଡ଼ି ଦୌଡ଼ି ବାମ୍ପିଂ ଆଡ଼କୁ ଗଲେ ଏବଂ କୁଅରେ ପଡ଼ି ମଲେ । କାଳ ପଛରେ ମୃତ୍ୟୁ ଆଗରେ, କୁଆଡ଼େ ଯିବେ ?

ପ୍ରଥମେ ପ୍ରଥମେ କେତେକ ସୈନିକ ଉପରକୁ ଗୁଳି ଚଳାଇଥିଲେ । ସେମାନଙ୍କୁ ଜେନେରାଲ ଡାୟାର ପାଟିକରି ଚିତ୍କାର କରି କହିଲେ:

"ହେ ! ତଳକୁ ଗୁଳି ମାର । ତୁମ୍ଭମାନଙ୍କୁ ଏଠିକି କାହିଁକି ଅଣାଗଲା ?"

ପଡ଼ିଆ ସାରା ଜଳନ୍ତା କୁଣ୍ଡପରି ଲାଗୁଥିଲା । ଆର୍ଥର ସ୍ୱିନ୍‌ସାନ୍ ନାମକ ଜଣେ ବ୍ୟକ୍ତି ଏସବୁ ମର୍ମସ୍ପର୍ଶୀ ଘଟଣାକୁ ସ୍ୱଚକ୍ଷୁରେ ଦେଖି ନିମ୍ନ ପ୍ରକାରେ ବର୍ଣ୍ଣନା କରିଛନ୍ତି,

ପଳେଇଯିବା ପାଇଁ ଚେଷ୍ଟାକରି ଲୋକମାନେ ପଡ଼ିଆକୁ ଲାଗିଥିବା ରାସ୍ତାରେ ଯାଇ ପହଞ୍ଚିଥିଲେ । ପଡ଼ିଉଠି, ଯାକୁତାକୁ ଧକ୍କା ମାରି, ପାଦତଳେ ଚକଟି ହୋଇ ଦୌଡୁଥିଲେ, ବ୍ରିଗ୍ସ ସେ ପଟକୁ ଦେଖି ଡାୟାରଙ୍କୁ ଦେଖାଇଦେଲେ । ଡ଼ାୟାର ଭାବିଲେ ଲୋକମାନେ ତାଙ୍କୁ



ଆକ୍ରମଣ କରିବା ପାଇଁ ଏକାଠି ହେଉଛନ୍ତି । ସେ ସୈନ୍ୟମାନଙ୍କୁ ଗୁଳି ଚଳାଇବାକୁ ଆଦେଶ ଦେଲେ । ତାହାର ପରିଣାମ ଭୟାବହ ହେଲା । ଚିତ୍କାର କରି ଲୋକମାନେ ଖଣ୍ଡିଆ ହୋଇ ଭିଡ଼ରେ ଗୋଡ଼ତଳେ ପଡ଼ି ଚକଟି ହୋଇଗଲେ । ଅନେକ ଲୋକଙ୍କୁ ଥରକୁ ଥର ଗୁଳି ଲାଗିଲା । ବହୁ ସ୍ଥାନରେ ଲୋକଙ୍କ ମୃତ ଶବଗଦା ଜମା ହୋଇଗଲା । ଯଦି ଜଣକୁ ଗୁଳି ବାଜି ସେ ତଳେ ପଡି ଯାଉଥିଲା, ତା ଉପରେ ଆଉ ଦଶଜଣ ଖଣ୍ଡିଆ ଖାବରା ଲୋକ ପଡ଼ିଯାଉଥିଲେ । ଗୁଳି ବର୍ଷା ତଥାପି ହେଉଥାଏ । ଏପରି ଭାବରେ ଶହ ଶହ ଲୋକ ବାହାରିବାର ଆଶା ତ୍ୟାଗକରି ପାଚେରୀ ଉପରଦେଇ ପଳେଇବାକୁ ଚେଷ୍ଟାକଲେ, ମାତ୍ର ପାଚେରୀ କେଉଁଠି 5 ଫୁଟ୍ ଉଚ୍ଚା ତ କେଉଁଠାରେ 7 ରୁ 8 ଫୁଟ୍ ଉଚ୍ଚା ଥିଲା, ସେମାନେ ଦୌଡି ଦୌଡି ପାଚେରୀର ଆଶ୍ରା ନେଲେ । ମାତ୍ର ଏମିତି ପାଚେରୀ ସବୁ ଥିଲା ଯେ ଯାହାକୁ ଧରି ଚଢ଼ି ଡେଇଁ ଯିବାକୁ ମଧ୍ୟ କିଛି ସାହାଭରସା ନଥିଲା । କେତେ ଭାଗ୍ୟବାନ୍ ଥିଲେ । ସେମାନେ କାନ୍ଥ ଉପରକୁ ଚଢ଼ିଗଲେ ସତ, ମାତ୍ର ପଛରେ ଥିବା ଲୋକମାନେ ସାହା ଭରସା ଆଶାରେ ସେମାନଙ୍କର ଗୋଡକୁ ତଳକୁ ଟାଣି ଦେଉଥିଲେ । ଅଳ୍ପ କେତେଜଣ କାନ୍ଥ ଡେଇଁ ପଳେଇବାରେ ସଫଳ ହେଲେ, ମାତ୍ର ଅଧିକାଂଶ ଲୋକ କାନ୍ଥ ଡେଇଁ ଯିବା ସ୍ୱପ୍ନରେ ଥାଇ ଗୁଳିମାଡରେ ମୃତ୍ୟୁବରଣ କଲେ । କେତେ ଲୋକ ଏମିତି ମଧ୍ୟ ଥିଲେ ଯେଉଁମାନେ ପାଚେରୀ ଉପରେ ଚଢ଼ି ସାରିଥିଲେ ମାତ୍ର ଗୁଳିମାଡ଼ରେ ଆକାଶରୁ ପଥର ପଡ଼ିଲା ପରି ତଳେ ପଡି ମଲେ ।

ଗୁଳି ମାଡ଼ରେ 20 ହଜାର ଲୋକ ଆକ୍ରାନ୍ତ ହୋଇଥିଲେ । କିଛି ସମୟ ପୂର୍ବରୁ ଯେଉଁ ଜାଗାରେ ଶାନ୍ତିର ବୈଠକ ଚାଲିଥିଲା ଏବେ ସେ ଜାଗାରେ ଚିତ୍କାର ଏବଂ ମୃତାହତଙ୍କ କୋଳାହଳ ଶୁଭୁଥିଲା ।

10 ରୁ 15 ମିନିଟ୍ ପର୍ଯ୍ୟନ୍ତ ଗୁଳିବର୍ଷଣ ହେଲା । ପ୍ରତ୍ୟେକ ବନ୍ଧୁକଧାରୀ 33 ରାଉଣ୍ଡ ଲେଖାଏଁ ଗୁଳି ଚଳେଇଥିଲେ । ଡାୟାର ତାପରେ ସ୍ୱୀକାର କଲେ ଯେ ଯଦି ସେ ଆଉ ଗୋଳାବାରୁଦ ପାଇଥାନ୍ତେ ତେବେ ସେତକ ମଧ ଲୋକମାନଙ୍କ ଉପରେ ଚଳେଇ ଦେଇଥାନ୍ତେ, ଦୁଃର୍ଭାଗ୍ୟବଶତଃ ପାଖରେ ଗୁଳି ଆଉ ନଥିଲା । ଜେନେରାଲ୍ ଡାୟାର

ଏବଂ ତାଙ୍କ ସେନାମାନେ ପ୍ରାୟ୍ ସାଢେ ପାଞ୍ଚଟା ବେଳେ ଏହାକୁ ନର୍କର ଅଗ୍ନିକୁଣ୍ଡ କରି ଛାଡ଼ି ପଳାଇଗଲେ । ପ୍ରାୟ୍ ଦୁଇ ହଜାର ପର୍ଯ୍ୟନ୍ତ ଲୋକ ସେଠି ତଳେ ପଡି କ୍ଷତବିକ୍ଷତ ହୋଇ ଯନ୍ତ୍ରଣାରେ ଚିତ୍କାର କରୁଥିଲେ । ଅଧିକାଂଶ ପାଣି ମାଗୁଥିଲେ । ମାତ୍ର ପାଣି ତ ଦୂରର କଥା, କୌଣସି ପ୍ରକାରର ସାହାଯ୍ୟ ମଧ୍ୟ ସେମାନଙ୍କୁ କରିବା ସମ୍ଭବ ନଥିଲା । ଆହତ ଲୋକମାନେ ସେମିତି ପଡ଼ି ସ୍ଥାନେ ସ୍ଥାନେ ମରିଯାଉଥିଲେ । ଡରରେ କେହି ଡାକ୍ତର ଭିତରକୁ ଆସିପାରୁନଥିଲେ । ଏପରିକି ଲୋକ ମଧ୍ୟ ଭିତରକୁ ଆସିବାକୁ ଡ଼ରୁଥିଲେ, ଯେଉଁମାନଙ୍କର ବନ୍ଧୁବାନ୍ଧବମାନେ ସଭାରେ ଭାଗ ନେବାପାଇଁ ଆସି ଆହତ ହୋଇଥିଲେ । କେତେକ ବିକ୍ଷତ ଲୋକ ଘୁସୁରି ଘୁସୁରି ଗଳି ପାଖରେ ପହଞ୍ଚିଲେ, ମାତ୍ର ଆଗକୁ ଯାଇ ପାରିଲେ ନାହିଁ ଏବଂ ଗଳିରେ ପଡି ନିଜ ରକ୍ତରେ ହିଁ ବୁଡି ଶେଷ ନିଶ୍ୱାସ ତ୍ୟାଗ କଲେ ।

କିଛି ସମୟ୍ ପରେ, ଅମୃତସରର ବାସିନ୍ଦା ମାନେ ଡରିମରି ନିଜ ବନ୍ଧୁକୁଟୁମ୍ବମାନଙ୍କୁ ଖୋଜି ଖୋଜି ବାଗ ଭିତରକୁ ଆସିଲେ । ଶୀଘ୍ର ରାତି ହୋଇ ଆସିଲା । ଅନ୍ଧାରରେ କିଏ ବା କେମିତି କାହାର ନିଜର ସମ୍ପର୍କୀୟ୍ମାନଙ୍କୁ ଚିହ୍ନି ଖୋଜି ପାଇପାରିବ ? ସବୁ ଜାଗାରେ ମୃତ ଶବର ପାହାଡ଼ । ପୁଣି ୫ ଟା ପରେ କେହି ବାହାରକୁ ଆସି ପାରିବେ ନାହିଁ । କିଛି ଲୋକଙ୍କୁ ସେମାନଙ୍କ ନିଜର ଲୋକ ମିଳିଗଲେ ଏବଂ ସେମାନଙ୍କୁ ଉଠାଇ ନେଇଗଲେ । ୫ ଟା ବାଜିବା ମାତ୍ରେ ସବୁ ଲୋକ ବାଗ୍‌ରୁ ବାହାରି ଆସିଲେ ଏବଂ ଆହତ ଲୋକମାନେ ବାଗ୍‌ର ଖୋଲା ପଡ଼ିଆରେ ଚିତ୍କାର କରି ପଡ଼ିରହିଲେ, ଦେଖିବା ଲୋକ କୁହନ୍ତି ଯେ କୁଆଡ଼େ ପ୍ରାୟ୍ ଏକ ହଜାର ଲୋକ ଜାଲିଆନାୱାଲା ବାଗରେ ରାତି ସାରା ପଡି ରହିଥିଲେ । କେତେକଙ୍କର ଏତେ ରକ୍ତସ୍ରାବ ହେଲା ଯେ ସକାଳ ହେବାଯାଏଁ ସେମାନେ ବଞ୍ଚିନଥିଲେ ।

ହେଲେ ଜେନେରାଲ ଡାୟାର ଏତେବଡ଼ ଘଟଣା ହେଲାପରେ ମଧ୍ୟ ସନ୍ତୁଷ୍ଟ

ନଥିଲେ । ରାତି 10 ଟା ବେଳେ ପୁଣି ଗୋଟେ ସେନାଦଳ ସହ ସହରରେ ମାର୍ଚ୍ଚ କଲେ କେବଳ ଦେଖିବାପାଇଁ ଯେ ରାତି 8 ଟା ପରେ ମଧ୍ୟ ଅମୃତସର ସହରର ରାସ୍ତାରେ କେହି ବୁଲୁ ନାହାନ୍ତି ତ ! "ମୋର ଆଦେଶ ପାଳନ ହୋଇଛି କି ନାହିଁ ।" ତାଙ୍କ ନିଜ ଭାଷାରେ, "ରାସ୍ତା ଶୁନ୍‌ଶାନ୍ ଥିଲା, ଚାରିପଟେ ନିସ୍ତବ୍‌ଧତା, ଗୋଟିଏ ହେଲେ ଲୋକ ମଧ୍ୟ ଦେଖିବାକୁ ମିଳିନଥିଲା ।"

ଏହି ଭୟାବହ ଘଟଣାର କିଛି ସମୟପରେ ଯେତେବେଳେ ସଂଖ୍ୟା ଏବଂ ସୂଚନା ଏକାଠି କରାଗଲା, ସେବେ ଜେନେରାଲ୍ ଡ଼ାୟାର୍ 25 ଅଗଷ୍ଟ 1919 ରେ ଜେନେରାଲ ଷ୍ଟାଫ ଡିଭିଜନ୍ ସାମନାରେ ନିଜ ବକ୍ତବ୍ୟରେ କହିଲେ:

ମୁଁ ଗୁଳି ଚ଼ଳାଇଥିଲି ଏବଂ ଗହଳିକୁ ଛିନ୍‌ଛତ୍ର କରିଦେବା ପର୍ଯ୍ୟନ୍ତ ଗୋଳାବର୍ଷଣ କରିଥିଲି । ମୁଁ ଭାବୁଛି ଯେପରି ଭାବରେ ଲୋକଙ୍କୁ ଚଳେଇବାର ଥିଲା, ତାହାକୁ ଆଗରେ ରଖି ବେଶୀ ଗୁଳି ଚ଼ଳାଇଲି ନାହିଁ । ଯଦି ମୋ ପାଖରେ ଅଧିକା ମାତ୍ରାରେ ସେନା ଥାଆନ୍ତେ, ତେବେ ଲୋକଙ୍କର ହତାହତ ବି ଅଧିକ ହୋଇଥାନ୍ତା । ଲୋକଙ୍କୁ ଘଉଡ଼େଇବା ପାଇଁ କେବଳ ଯାଇନଥିଲି, ମୁଁ ତାଙ୍କୁ ଡ଼ରେଇବା ପାଇଁ ଚେଷ୍ଟା କରିଥିଲି । ସେଠି ଯେତେ ଲୋକ ଉପସ୍ଥିତ ଥିଲେ, ଖାଲି ସେମାନଙ୍କ ପାଇଁ ନୁହେଁ, ସାରା ପଞ୍ଜାବର ଲୋକମାନଙ୍କ ହୃଦୟରେ ଏହି ଭୟ ଜାତ କରିବା ପାଇଁ ମୁଁ ଗୁଳି ଚ଼ଳେଇଲି । ଯାହା ଯେତିକି ମୁଁ କରିଛି ଠିକ୍ ସେତିକି ଆବଶ୍ୟକ ଥିଲା, ତେଣୁ ଅଧିକ କରିବାର ପ୍ରଶ୍ନ ଉଠୁନାହିଁ ।

ପଞ୍ଜାବରେ ଏପରି ମର୍ମନ୍ତୁଦ ଘଟଣାକୁ ନେଇ ଇଂଲଣ୍ଡ ଏବଂ ଭାରତରେ ସମାଲୋଚନା ହେଲା । ତାହାର ଅନୁସନ୍ଧାନ କରାଯାଉ ବୋଲି ଦାବୀ କରାଗଲା, ତାର ଫଳ ସ୍ୱରୁପ ଅକ୍ଟୋବର 1919ରେ ହଣ୍ଟର କମିସନ ସ୍ଥାପନ କରାଗଲା । କମିସନ ସାମନାରେ ଜେନେରାଲ ଡ଼ାୟାର କେତେକ ପ୍ରଶ୍ନର ଉତ୍ତର ଦେଇଥିଲେ :

# ବ୍ରିଟିଶ ଖବରକାଗଜରେ ଜାଲିଆନାୱାଲା ବାଗର ହତ୍ୟାକାଣ୍ଡ

ଜାଲିଆନାୱାଲା ବାଗର ହତ୍ୟାକାଣ୍ଡକୁ ନେଇ ବ୍ରିଟିଶ୍ ଖବରକାଗଜ ଦୈନିକ ହେରାଲଡ(**Daily Herald**) ପ୍ରତିକ୍ରିୟା ଛାପିଥିଲା । ସେଥିରୁ କିଛି 1920 ମସିହା ଜାନୁୟାରୀ 12 ତାରିଖର ଅମୃତ ବଜାର ପତ୍ରିକାରେ ପ୍ରକାଶ ପାଇଥିଲା । ତାହାର କିଛି ଅଂଶ ତଳେ ଦିଆଯାଇଛି :

ଏପ୍ରିଲ ମାସରେ ପଞ୍ଜାବର ଅମୃତସରରେ ଘଟିଥିବା ନିର୍ମମ ହତ୍ୟାକାଣ୍ଡର ବିବରଣୀ ଆଧୁନିକ ଇତିହାସରେ ଅନ୍ୟତମ ଶ୍ରେଷ୍ଠ ନୃଶଂସ ରକ୍ତାକ୍ତ ହତ୍ୟା ବୋଲି କୁହାଯାଇପାରେ ।

ଆଜିପର୍ଯ୍ୟନ୍ତ ଯେତିକି ଉପନିବେଶୀୟ ଅତ୍ୟାଗ୍ରର ଏବଂ ବିଦ୍ରୋହଜ ସମ୍ବାଦ ବ୍ରିଟିଶ ସାମ୍ରାଜ୍ୟର ପ୍ରଜାମାନଙ୍କ ସଂପର୍କରେ ପ୍ରକାଶପାଇଛି, ସବୁଠାରୁ ଅମୃତସରର ହତ୍ୟାକାଣ୍ଡ ଅଧିକ ମର୍ମସ୍ପର୍ଶୀ, ଆଶ୍ଚର୍ଯ୍ୟଜନକ, ଏବଂ ବିକାରପୂର୍ଣ୍ଣ ଘଟଣା । ଜେନେରାଲ ଡାୟାରଙ୍କର ରିପୋର୍ଟ ଅନୁସାରେ ଇଚ୍ଛାକୃତ ନିର୍ମମ ଗୁଳିମାଡ଼ରେ ପ୍ରାୟ 400ରୁ ଉର୍ଦ୍ଧ୍ୱ ଭାରତୀୟଙ୍କର ଜଘନ୍ୟ ମୃତ୍ୟୁ ଏବଂ 1,500 ଜଣ କ୍ଷତବିକ୍ଷତ ହୋଇଥିଲେ ଯେତେବେଳେ କି ପ୍ରାୟ 5000 ଲୋକ ସେଠି ରହି ଭାଷଣ ଶୁଣୁଥିଲେ ।

ଏପରି ଘୃଣାପୂର୍ଣ୍ଣ ଏବଂ ଭୟଙ୍କର କାହାଣୀ ଆଜିଯାଏଁ କୁହାଯାଇନାହିଁ । ଜେନେରାଲ ଡାୟାର ରିପୋର୍ଟରେ ସ୍ୱୀକାର କହିଥିଲେ ଯେ ଲୋକମାନେ ଶୃଙ୍ଖଳାର ସହିତ ଏବଂ ବିନା ରକ୍ତପାତରେ ଫେରିଯାଇ ପାରିଥାନ୍ତେ, ମାତ୍ର ପୁଣି ଆସିଥାନ୍ତେ ଏବଂ ତାଙ୍କୁ ବୋକା ମନେକରି ହସିଥାନ୍ତେ । ଏହିସବୁ କଥା ସେ ଆଗରୁ ଭାବି ଏପରି ନରହତ୍ୟା କରାଇଲେ ।

ସ୍ୱୀକୃତି ପ୍ରମାଣ ପତ୍ରରୁ ଯାହା ସୂଚନା ମିଳିଲା, ସେ ସ୍ୱୀକାର କରିଥିଲେ ଯେ ମାନବ ଯନ୍ତ୍ରଣାକୁ ଦେଖି ମଧ୍ୟ ଇଂରେଜ ଅଧିକାରୀମାନେ ଲୋକମାନଙ୍କୁ ଗଳିମଝିରେ କ୍ଷତବିକ୍ଷତ ଅବସ୍ଥାରେ ଛାଡ଼ିଦେଇ ପଳାଇ ଯାଇଥିଲେ । ଏହା ଏଇଥିପାଇଁ କରାଗଲା ବୋଲି ଆମେ ଭାବୁଛୁ ଯେ ସଭ୍ୟତା ଏବଂ ଭିନ୍ନ ଧର୍ମର ସ୍ତ୍ରୀ ଓ ପୁରୁଷ ମାନଙ୍କୁ ଆମେ ଶିଖାଇ ଦେବାକୁ ଚାହିଁଥିଲୁ, ଖ୍ରୀଷ୍ଟିୟାନ ଧର୍ମ କେତେ ସୁନ୍ଦର ଏବଂ ଦୟାବନ୍ତ ତଥା ଆମେ ଇଂରେଜମାନେ କେତେ ପବିତ୍ର ଯେଉଁମାନେକି ସେହି ଈଶ୍ୱରଙ୍କର ସେଇ ପବିତ୍ର ନିୟମକୁ ମାନନ୍ତି ଯେଉଁଥିରେ ଶତ୍ରୁକୁ ମଧ୍ୟ ପ୍ରେମ କରିବାକୁ କୁହାଯାଇଛି !

ପ୍ରଶ୍ନ	ଯେବେ ତୁମେ ବାଗକୁ ଯାଇଥିଲ, ସେଠି କ'ଣ କଲ ?

ଉତ୍ତର	ମୁଁ ଗୁଳି ଚଳାଇଲି ।

ପ୍ରଶ୍ନ	ସାଙ୍ଗେ ସାଙ୍ଗେ ?

ଉତ୍ତର	ମୁଁ ଭାବିନେଇଥିଲି ଏବଂ ଅଧ ମିନିଟ୍‌ରେ ହିଁ ମୋତେ କ'ଣ କରିବାକୁ ହେବ ତାର ନିଷ୍ପତ୍ତି କରିଥିଲି ?

ପ୍ରଶ୍ନ	କ'ଣ ଗୁଳି ମାରିବା ପରେପରେ ପୂରା ଗହଳି ଭାଂଗି ଯାଇଥିଲା ?

ଉତ୍ତର	ହଁ, ତତକ୍ଷଣାତ୍ ।

ପ୍ରଶ୍ନ	କ'ଣ ତୁମେ ତା'ପରେବି ଗୁଳି ମାରିଲ ?

ଉତ୍ତର	ହଁ ।

ପ୍ରଶ୍ନ	କ'ଣ ଲୋକମାନେ ବାଗ୍‌ରୁ ବାହାରି ବିଭିନ୍ନ ରାସ୍ତାରେ ପଳେଇଯିବା ପାଇଁ ଚେଷ୍ଟା କରିଥିଲେ ?

ଉତ୍ତର	ହଁ ।

ପ୍ରଶ୍ନ	ସେ ସ୍ଥାନରେ ତ ଗହଳି ବେଶୀ ଥିବ ?

ଉତ୍ତର	ହଁ ।

ପ୍ରଶ୍ନ	ବେଳେବେଳେ ତୁମେ ଗୁଳିର ଦିଗ ପରିବର୍ତ୍ତନ କରି ସେଇ ଗହଳି ଉପରେ ଗୁଳି ଚଳାଇଥିଲ ?

ଉତ୍ତର	ହଁ । ପୂରା ଠିକ୍ ।

ପ୍ରଶ୍ନ	କ'ଣ ଏହା ଠିକ୍ ଥିଲା ?

ଉତ୍ତର	ହଁ, ଏହା ଠିକ୍ ଥିଲା ।

ପ୍ରଶ୍ନ	ଏବଂ ତୁମେ ବିଚାର କରି ସାରିଥିଲ ଯେ ତୁମେ ଭିଡ଼ ଉପରେ ଗୁଳିମାଡ଼ କରିବ ?

ଉତ୍ତର    ହଁ. ଏହା ମଧ୍ୟ ଠିକ୍ ।

ପ୍ରଶ୍ନ    ଯେତେବେଳେ 12ଟା 40 ମିନିଟ୍‌ରେ (ତୁମେ ଶୁଣିଲ ଯେ) ସଭା ହେବାକୁ ଯାଉଛି, କ'ଣ ତୁମେ ନିଷ୍ପତ୍ତି ନେଇ ସାରିଥିଲ ଯେ ସଭା ହେଲେ ସେଠିକୁ ଯାଇ ତୁମେ ଗୁଳି ଚଳେଇବ ।

ଉତ୍ତର    ....ମୁଁ ନିଷ୍ପତ୍ତି କରିସାରିଥିଲି ଯେ ତୁରନ୍ତ ଗୁଳି ଚଲାଇବି, ତାହାଲେ ସୈନିକ ମାନଙ୍କର ସ୍ଥିତି ଠିକ୍ ରହିବ । ସେନାକୁ ଉପଯୋଗ କରିବା ପାଇଁ ସମୟ ଆସିଯାଇଥିଲା । ଯଦି ମୁଁ ଆଉ ଡେ଼ରି କରିଥାନ୍ତି, ତେବେ ମୋତେ କୋର୍ଟ ମାର୍ଶାଲ ହୋଇଥାନ୍ତା ।

ପ୍ରଶ୍ନ    ମନେକର ବାଗ ଭିତରକୁ ଅସିବା ରାସ୍ତାକୁ ଚଉଡ଼ା କରି ଦିଆଯାଇଥାନ୍ତା, ତେବେ ତୁମେ କ'ଣ ଗୋଳାବାରୁଦ ଟ୍ରକ ନେଇ ଭିତରକୁ ଆସିଥାନ୍ତ ଏବଂ ଲୋକଙ୍କ ଉପରେ ମେସିନ୍‌ଗନ୍‌ରେ ଗୁଳି ଚ଼ଳେଇଥାନ୍ତ ?

ଉତ୍ତର    ହଁ । ବିଲ୍‌କୁଲ୍ ଠିକ୍ । ମୁଁ ଜରୁର୍ ଗୁଳି ମାରିଥାନ୍ତି ।

ପ୍ରଶ୍ନ    ସେ ସମୟରେ ତ ମରିବା ଲୋକ ଏବଂ କ୍ଷତବିକ୍ଷତ ଲୋକମାନଙ୍କର ସଂଖ୍ୟା ଅଧିକ ହୋଇଥାନ୍ତା ?

ଉତ୍ତର    ହଁ, ହୋଇଥାନ୍ତା ।

ପ୍ରଶ୍ନ    :  ତୁମେ ଏଥିପାଇଁ ମେସିନଗନ୍ ଚ଼ଳେଇ ପାରିଲ ନାହିଁ କି ସେ ଗଳି ଭିତର ଦେଇ ଗୋଳା ବାରୁଦ ଭରା ଟ୍ରକ ଆସିପାରିଲା ନାହିଁ ?

ଉତ୍ତର    ମୁଁ ଆପଣଙ୍କର ପ୍ରଶ୍ନର ଉତ୍ତର ଦେଇ ସାରିଛି । ମୁଁ କହିଲି ତ, ଯଦି ଗୋଳାବାରୁଦ ଭରା ଗାଡ଼ି ବାଗ୍ ଭିତରକୁ ଆସି ପାରିଥାନ୍ତା, ତେବେ ନିଶ୍ଚିତ ଭାବରେ ମେସିନ୍‌ଗନ୍ ମୁଁ ଚଳେଇଥାନ୍ତି ।

ପ୍ରଶ୍ନ    ମେସିନଗନ୍ ଦ୍ୱାରା ଗହଳି ଭିତରକୁ ସିଧା ଗୁଳି ମାରିଥାନ୍ତ ?

ଉତ୍ତର	ହଁ, ମେସିନ୍‌ଗନ୍ ଦ୍ୱାରା ।

ପ୍ରଶ୍ନ	ମୁଁ ଜାଣେ ଏଇଆ ଭାବିବିକି, ତୁମର ଗୁଳିଗ୍ୱଳନା ଲୋକମାନଙ୍କ ହୃଦୟରେ ଭୟ ଜନ୍ମେଇବା ପାଇଁ ଥିଲା ?

ଉତ୍ତର	ତୁମେ ଯାହା କହ ପଛେ, ମୁଁ ସେମାନଙ୍କୁ ଦଣ୍ଡ ଦେବାକୁ ଗ୍ୱହୁଁଥିଲି । ସେନା ଦୃଷ୍ଟିରୁ ମୁଁ ସେମାନଙ୍କ ହୃଦୟରେ ଗଭୀର ପ୍ରଭାବ ପକାଇବାକୁ ଗ୍ୱହୁଁଥିଲି ।

ପ୍ରଶ୍ନ	ଆତଙ୍କ କେବଳ ଅମୃତସର ସହରରେ ନୁହେଁ ସାରା ପଞ୍ଜାବରେ ?

ଉତ୍ତର	ହଁ, ସାରା ପଞ୍ଜାବରେ, ମୁଁ ସେମାନଙ୍କର ଆତ୍ମବିଶ୍ୱାସକୁ ଭାଙ୍ଗିବାକୁ ଗ୍ୱହୁଁଥିଲି । ସେହି ବିଦ୍ରୋହୀ ମାନଙ୍କର ଆତ୍ମବିଶ୍ୱାସ ।

## ଉଧମ ସିଂହଙ୍କ ବକ୍ତବ୍ୟ

ଉଧମ ସିଂହ, ଯିଏ ଆପଣାର ବନ୍ଧୁମାନଙ୍କ ପାଖରେ ରାମ ମହମ୍ମଦ ସିଂହ ଆଜାଦ୍ ନାମରେ ପରିଚିତ, 13 ମାର୍ଚ୍ଚ 1940 ମସିହାରେ, ଜାଲିଆନାୱାଲା ବାଗ ହତ୍ୟାକାଣ୍ଡ ସମୟରେ ପଞ୍ଜାବର ଗଭର୍ଣ୍ଣର ଥିବା ମାଇକେଲ ଓ'ଡ଼ାୟାରଙ୍କୁ ଲଣ୍ଡନର କାକ୍ସଟନ୍ ହଲରେ ଗୁଳିମାରି ହତ୍ୟା କରିଥିଲେ । ସେହି ଉଧମ ସିଂହଙ୍କୁ ବିଗ୍ୱରକରି 12 ଜୁନ୍ 1940 ରେ ଫାଶୀ ହେଲା । ଫାଶୀ ପାଇବା ପୂର୍ବରୁ ତାଙ୍କର ଯାହା ବକ୍ତବ୍ୟ ଥିଲା ତାହାର କେତେକାଂଶ :

> ଏହାହିଁ ତାର ପ୍ରାପ୍ୟ, ସେ ହିଁ ପ୍ରକୃତ ଦୋଷୀ, ସେ ମୋ ଦେଶର ଲୋକମାନଙ୍କର ଆତ୍ମବଳ ଭାଙ୍ଗି ଦେଇଥିଲା ... ମୋ ମାତୃଭୂମି ପାଇଁ ଜୀବନ ଉତ୍ସର୍ଗ କରିବା ଠାରୁ ବଳି ଆଉ ଅଧିକ ସମ୍ମାନ ମୋତେ କ'ଣ ମିଳିଥାନ୍ତା ?

## ମାର୍ଶାଲ ଆଇନ୍

ଅମୃତସରର ଲୋକମାନଙ୍କ ନିର୍ମମ ହତ୍ୟାକାଣ୍ଡ ସମାପ୍ତ ହେଲା ନାହିଁ । ଖ୍ରିଜଣ ଇଉରୋପୀୟଙ୍କର ମୃତ୍ୟୁ ଏବଂ ଜଣେ ଇଂରେଜ ମହିଳାଙ୍କ ଉପରେ ହୋଇଥିବା ଆକ୍ରମଣର ପ୍ରତିଶୋଧ ପୂରା ହୋଇନଥିଲା । ତା'ପର ଦିନ ଅର୍ଥାତ 14 ଏପ୍ରିଲ ଦିନ ମାର୍ଶାଲ ଆଇନ୍ ଲାଗୁ କରାଗଲା ।

ସହରରେ ଲୋକମାନଙ୍କର ରହିବା କଷ୍ଟକର ହେଲା । ଯେଉଁ ରାସ୍ତା ଉପରେ ମିସ୍ ଶିରବୁଡ଼ଙ୍କୁ ଆକ୍ରମଣ କରାଯାଇଥିଲା, ସେହି ରାସ୍ତା ଦେଇ ଯାଉଥିବା ଯେ କୌଣସି ଭାରତୀୟଙ୍କୁ ଆଣ୍ଠୁରେ ଚ୍ଛଲି ଯିବାକୁ ପଡୁଥିଲା ।

ଯଦି କେହି ଏପରି କରିବାକୁ ମନା କରୁଥିଲା, ତେବେ ବନ୍ଧୁକ ମୁନରେ ସେମାନଙ୍କୁ ମନେଇବାକୁ ହେଉଥିଲା ।

ସବୁ ଭାରତୀୟଙ୍କୁ ସେମାନଙ୍କ ସାମନାରେ ଆସୁଥିବା ସମସ୍ତ ଇଂରେଜଙ୍କୁ ସଲାମ କରିବାକୁ ପଡୁଥିଲା । ଏପରି ନକଲେ ଗିରଫ



# ମାର୍ଶାଲ ଆଇନର .ଯନ୍ତ୍ରଣା ସଂପର୍କରେ କଂଗ୍ରେସ ଉପସମିତିର ରିପୋର୍ଟ

ଭାରତୀୟ ଜାତୀୟ କଂଗ୍ରେସର ପଞ୍ଜାବ ଉପସମିତି ପଞ୍ଜାବର ବିଶୃଙ୍ଖଳାର ଅଧ୍ୟୟନ ପାଇଁ ଏକ କମିଶନ୍ ନିଯୁକ୍ତି କରିଥିଲା । କମିଶନ୍‌ର ସଦସ୍ୟ ଥିଲେ, ଶ୍ରୀଯୁକ୍ତ ମଦନ ମୋହନ ମାଳବ୍ୟ, ମୋତିଲାଲ ନେହେରୁ, ଗାନ୍ଧୀଜୀ, ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ, ଅବାସ୍ ତୟାବ ଏସ୍.ଜୀ.ଏମ୍.ଆର୍. ଜୟକର ଏବଂ କେ: ସନ୍ତନମ୍। ତଳେ ଦିଆଯାଇଅଛି ଗୁରୁଣ୍ଡିବା, ଚାବୁକ ମରାଯିବା, ସଲାମ କରିବା ଆଦେଶ ସଂପର୍କିତ ଅଂଶ । ମାର୍ଚ୍ଚ 1920ରେ କମିଶନ୍‌ର ରିପୋର୍ଟର ଗୋଟିଏ ଅଂଶରୁ ଏହା ଉଦ୍ଧାର କରାଯାଇଛି ।

**ଶ୍ରୀ ଲାଲ୍ ଚାନ୍ଦ୍ :** "ଈଶ୍ୱର ଦାସ, ପନ୍ନାଲାଲ, ମେଲାରାମ ଏବଂ ମୁଁ ଘରକୁ ଯିବାକୁ ଚାହିଁଲୁ, ମାତ୍ର ପୁଲିସ ଆମ୍ଭମାନଙ୍କୁ ଯିବାପାଇଁ ଅନୁମତି ଦେଲା ନାହିଁ। ଆମେ ପୁଣିଥରେ ଅନୁମତି ମାଗିଥିଲୁ, ଆମକୁ ଗୁରୁଣ୍ଡି ଗୁରୁଣ୍ଡି ଗଳି ପାର ହେବାକୁ କୁହାଗଲା ! ଏଣୁ ଆମ୍ଭେମାନେ ଗଳି ପାର ହେବା ପାଇଁ ପେଟେଇ ପେଟେଇ ଚାଲିଲୁ । ଆମ୍ଭେମାନେ ଅନ୍ୟ କୌଣସି ରାସ୍ତା ଦେଇ ଆମ ଘରକୁ ଯାଇପାରିଲୁ ନାହିଁ।"

**ଲାଲା ମେଘାମଲ୍ :** ସେଦିନ ରାତି 2 ଟା ବେଳେ ମୁଁ ଆସି ଘରେ ଦେଖିଲି ମୋର ସ୍ତ୍ରୀ ଜରରେ କମ୍ପୁଛି । ଘରେ ପିଇବାକୁ ଟୋପାଏ ବି ପାଣି ନଥିଲା, ଡା ଛୁଡା ନା ଡାକ୍ତର ଥିଲା ନା ଔଷଧ ପାଖରେ ଥିଲା ! ମୁଁ ପାଣି ଆଣି ରାତିରେ ଡେରିରେ ପହଞ୍ଚିଲି । ସାତଦିନଯାଏଁ ମୋର ସ୍ତ୍ରୀ ବିନା ଚିକିତ୍ସାରେ ସେମିତି ପଡ଼ି ରହିଲା । କୌଣସି ଡାକ୍ତର ପେଟରେ ଗୁରୁଣ୍ଡି ଗୁରୁଣ୍ଡି ତାକୁ ଦେଖିବାକୁ ଆସିଲେ ନାହିଁ ।

*ଗୋଟିଏ ଅନ୍ଧକୁ ଘୁସୁରିବାକୁ ପଡିଲା ଏବଂ ଲାତ ମଧ ମରାଗଲା*

କହର ଚାନ୍ଦ ଗତ 20 ବର୍ଷଧରି ଅନ୍ଧ, ତାକୁ ଘୋସରାଗଲା ଏବଂ ଲାତ ମରାଗଲା । ଏହା ଜାଣିବା କଷ୍ଟ ଯେ କାହିଁକି ଚାବୁକ ମରାଗଲା ....... ୬ ଜଣ ବାଳକଙ୍କୁ ବେତରେ ପିଟାଗଲା । ସମସ୍ତଙ୍କୁ ଗୋଟିଏ ତ୍ରିଭୁଜାକାର କ୍ଷେତ୍ର ପରି ବନ୍ଧାଗଲା ଏବଂ ପିଠିରେ 30 ଥର ବେତମାଡ଼ ଦିଆଗଲା । ସେମାନଙ୍କ ମଧ୍ୟରୁ ସୁନ୍ଦର ସିଂହ 4 ଥର ଚାବୁକ ମାଡ ପରେ ଅଚେତ ହୋଇଗଲା, ଜଣେ ସୈନିକଦ୍ୱାରା ତାକୁ ପାଣି ଦିଆଗଲା । ପରେ ତାର ଚେତା ଆସିଲା, ପୁଣି ତାପରେ ବେତ ମାଡ଼ ଆରମ୍ଭ ହେଲା । ଅନ୍ୟ ବାଳକମାନଙ୍କୁ ମଧ୍ୟ ଏହିପରି ବ୍ୟବହାର କରାଗଲା ଏବଂ ଏମିତି ଅନେକ ଅଚେତ ହେଲେ । ତାପରେ ପୁଲିସ ସେମାନଙ୍କୁ ଟାଣି ଟାଣି ଦୁର୍ଗ ଭିତରକୁ ନେଇଗଲେ ।

ହେବାର ଭୟ ରହୁଥିଲା । ସେମିତି ମଧ୍ୟ ସହରରେ ସବୁ ପ୍ରକାରର ମାରଧର ଆରମ୍ଭ ହୋଇ ଯାଇଥିଲା । ନିର୍ଦ୍ଦୋଷ ଲୋକମାନଙ୍କୁ ମଧ୍ୟ ଯନ୍ତ୍ରଣା ଦେଇ, ଡରାଇ ଦୋଷୀ ବୋଲି ପ୍ରମାଣିତ କରାଯାଉଥିଲା । ଧରା ଯାଉଥିବା ଲୋକଙ୍କର କୋର୍ଟର ଆଶ୍ରୟ ନେବା ଅଧିକାର ମଧ୍ୟ ଛଡ଼େଇ ନିଆଯାଇଥିଲା । ଛୋଟ ଛୋଟ ଭୁଲପାଇଁ ଲୋକମାନଙ୍କୁ ଗଳି ମଝିରେ ଠିଆ କରାଇ ଚାବୁକ ମରାଯାଉଥିଲା ।

ଜାଲିଆନାୱାଲା ବାଗର ହତ୍ୟାକାଣ୍ଡ ନିର୍ମମ, ନୃଶଂସ ଏବଂ ଦୋଷପୂର୍ଣ୍ଣ ତ ଥିଲା, ତଥାପି ନିର୍ଲଜ ଇଂରେଜ ସରକାର ଅମୃତସର ଲୋକମାନଙ୍କ ପ୍ରତି ଅମାନୁଷିକ ବ୍ୟବହାର ଦେଖାଉଥିଲା, ଗାନ୍ଧୀଜୀ ତାଙ୍କ ଆତ୍ମକଥାରେ ଗୋଟିଏ ସ୍ଥାନେ ଲେଖିଛନ୍ତି:

> ଏପରି ଭୟଙ୍କର ଦୁର୍ବ୍ୟବହାର ତୁଳନାରେ ଜାଲିଆନାୱାଲା ବାଗର ନିର୍ମମ ହତ୍ୟାକାଣ୍ଡ ମଧ୍ୟ ଗୌଣ ହୋଇପଡିଥିଲା, ହେଲେ ମୁଖ୍ୟତଃ ଏହି ହତ୍ୟାକାଣ୍ଡ ହିଁ ଭାରତ ପ୍ରତି ଦେଶ ବିଦେଶର ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲା ...

ଜାଲିଆନାୱାଲା ବାଗରେ ହୋଇଥିବା ହତ୍ୟାକାଣ୍ଡ ଆମର ସ୍ୱାଧିନତା ସଂଗ୍ରାମକୁ ଗୋଟିଏ ନୂଆ ରାସ୍ତା ଦେଖାଇଲା । ଉଚ୍ଚ ନୈତିକତାର ଦାବୀ କରୁଥିବା ଇଂରେଜ ଶାସକମାନଙ୍କର ବାସ୍ତବ ମାନସିକତା ପ୍ରକାଶ ପାଇଗଲା । ଅନ୍ୟ ପକ୍ଷରେ, ସହରରେ ଚାଲିଥିବା ପ୍ରତିବନ୍ଧ ଓ କର୍ଫ୍ୟୁ ଥାଇ ମଧ ହଜାର ହଜାର ଲୋକଙ୍କର ଏପରି ଏକାଠି ହେବା ଏବଂ ସ୍ୱାଧିନତା ଆନ୍ଦୋଳନର ଚର୍ଚ୍ଚା କରି ଦେଶପାଇଁ ଶହୀଦ ହେବା ପାଇଁ ପ୍ରସ୍ତୁତ ହେବା, ଆନ୍ଦୋଳନ ପାଇଁ ଏକ ପ୍ରେରଣାର ପ୍ରତୀକ ହୋଇଗଲା । ପ୍ରାୟ ତିନିଦଶକ ପରେ ଯେତେବେଳେ ଭାରତ ସ୍ୱାଧିନ ହେଲା, ସେଇ ସ୍ୱାଧିନତା ପଛରେ ମଧ ସେହି ଲୋକମାନଙ୍କର ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ଥିଲା, ଯେଉଁମାନେ 13 ଏପ୍ରିଲ୍ ୧୭୧୯ ସଂଧ୍ୟାରେ ଜାଲିଆନାୱାଲା ବାଗରେ ହତାହତ ହୋଇଥିଲେ ।

ଶହୀଦଙ୍କ ଚିତାପରେ ପ୍ରତିବର୍ଷ ହୋଇବ ମେଳଣ
ଆମର ନିଶାଣ ତାଙ୍କ ଦେଶଲାଗି ଯିଏ ଦେଲେ ପ୍ରାଣ

S.S. BRIJBASI & SONS, New Delhi - 20.

# ମୋତିଲାଲ ନେହେରୁ ମାର୍ଶାଲ ଆଇନର ଯନ୍ତ୍ରଣା ସମ୍ପର୍କରେ

ପଞ୍ଜାବର ଲୋକମାନଙ୍କ କଠୋର ଅନୁଭବକୁ ପଣ୍ଡିତ ମୋତିଲାଲ ନେହେରୁ ୧୯୧୯ ରେ ଅମୃତସରରେ ହେଉଥିବା କଂଗ୍ରେସ ଅଧିବେସନରେ ନିଜର ଅଧକ୍ଷୀୟ ଭାଷଣରେ ଉଲ୍ଲେଖ କରିଥିଲେ । ତାରି ଅଂଶ ବିଶେଷ...

ଲୋକମାନଙ୍କୁ ଆତଙ୍କିତ କରିବା ସଙ୍ଗେସଙ୍ଗେ ପଞ୍ଜାବର ଅଧିକାରୀମାନେ ଆମ ଦୈନନ୍ଦିନ ରାଜନୈତିକ ଜୀବନର ଏକ ମୂଲ୍ୟବାନ ଅଂଶ ହିନ୍ଦୁ ମୁସଲମାନ ଏକତା ପ୍ରତି କଠୋର ଆଘାତ କରିବା ପାଇଁ ଚେଷ୍ଟା କରିଥିଲେ । ମୋର ପ୍ରିୟ ସାଥୀ ଅତିଥିଗଣ, ଆପଣମାନେ ଜାଣିଥିବେ ଏବେ ନିକଟରେ ହିନ୍ଦୁ ମୁସଲମାନ ଭ୍ରାତୃତ୍ୱକୁ ନେଇ ଯେଉଁ ସଂଘର୍ଷ ଦିଲ୍ଲୀ, ଲାହୋର ଏବଂ ଅନ୍ୟାନ୍ୟ ସ୍ଥାନମାନଙ୍କରେ ହେଲା । ସେତିକିବେଳେ ହିନ୍ଦୁ ମୁସଲମାନ ଜୟବିଜୟର ଜୟଧ୍ୱନି ବି ଶୁଣିବାକୁ ମିଳିଥିଲା । ଏହିସବୁ ବକ୍ତବ୍ୟ ଏବଂ ବନ୍ଧୁତ୍ୱର ବ୍ୟବହାରକୁ ଦେଖି ପଞ୍ଜାବର କର୍ମଗ୍ରଣୀମାନେ ଭାବିଲେ ଏହା ଏକ ଗୁରୁତର ଅପରାଧ, ମୁକ୍ତ ବିଦ୍ରୋହ, ତାଙ୍କ ରାଜାଙ୍କ ବିରୁଦ୍ଧରେ ଯୁଦ୍ଧାରମ୍ଭ । ଏହାଦ୍ୱାରା ଏ ଘୋଷଣା କରାଗଲା ଯେ ଆଇନ ଚକ୍ଷୁରେ ଏହି ହିନ୍ଦୁ ମୁସଲମାନ ଏକତା ସରକାରୀ ବିରୋଧୀ ଅଟେ । ମାର୍ଶାଲ ଆଇନ୍ ଅଧିକାରୀମାନେ ସର୍ବସାଧାରଣରେ ବିଭିନ୍ନ ଉପାୟରେ ହିନ୍ଦୁ ମୁସ୍‌ଲିମ୍ ଏକତାକୁ ଉପହାସ କରୁଥିଲେ ଯାହାକି ସବୁଠାରୁ ଲଜ୍ଜାର କାର୍ଯ୍ୟ ଥିଲା ।



ଟ ୨.50

ନ୍ୟାସନାଲ୍ ବୁକ ଟ୍ରଷ୍ଟ, ଇଣ୍ଡିଆ

ଜାଲିଆନାୱାଲା ବାଗ – ଏ ନାମ ଶୁଣିଲେ ହିଁ ପ୍ରତି ଭାରତବାସୀ ମନରେ ରୋମାଞ୍ଚ ଖେଳିଯାଏ । 13 ଏପ୍ରିଲ୍ 1919 ଦିନ ଅମୃତସରସ୍ଥିତ ଜାଲିଆନାୱାଲା ବାଗରେ ହଜାର ହଜାର ଲୋକଙ୍କୁ ଗୁଳିଗ୍ଳନା କରାଯାଇଥିଲା । ଏହି ହତ୍ୟାକାଣ୍ଡ କିପରି ଘଟିଲା ଓ ଆମ ସ୍ୱାଧୀନତା ସଂଗ୍ରାମର ଇତିହାସରେ ଏହାର ମହତ୍ୱ କ'ଣ – ତାହାରି କାହାଣୀ ଏହି ପୁସ୍ତକରେ ହିନ୍ଦୀ ସାହିତ୍ୟ ଜଗତର ପ୍ରସିଦ୍ଧ ଲେଖକ ଶ୍ରୀ ଭୀଷ୍ମ ସାହାନୀ ଲେଖିଛନ୍ତି ।